ପ୍ରକାଶ କରନ୍ତି —

ଜଗନ୍ନାଥ ଦେବ ବର୍ମା,

ଟିକଲ ।

ପ୍ରଥମ ପ୍ରକାଶ —

ଏକ ହଜାର ।

ପ୍ରଚ୍ଛଦପଟ୍ଟ ଅଙ୍କିଛନ୍ତି —

ଗୋପାଳ କାନୁନ୍‌ଗୋ,

ପୁରୀ ।

ମୂଲ୍ୟ —

ଏକଟଙ୍କା ଚାରିଅଣା ।

ମୁଦ୍ରଣ କରନ୍ତି —

କମଳ କୁମାରୀ ପ୍ରେସ୍,

ଟିକଲ ।

ତାଙ୍କର ଉଦ୍ଦେଶେ—

ବନ୍ୟାର ସ୍ରୋତରେ ଯେଉଁ ଫୁଟି ଆସୁଥିବା
କଅଁଳ ଫୁଲଟି ମାନ
ବାଠ କାଟି
ଆଉ ଫେରି ନାହାନ୍ତି
ତାଙ୍କର କର କମଳରେ
'ଦୀପକ'ର
ଶେଷ ମୂର୍ଚ୍ଛନା—

ପାଟଳିତ ପ୍ରଦୋଷ ।

ଚତୁର୍ଦ୍ଦିଗରେ ଅସ୍ତଗାମୀ ତପନ ସୃଷ୍ଟି କରିଚି ସିନ୍ଦୂରିତ ମହୋତ୍ସବ । ନୀଳ ଆକାଶ ତଳେ ବସନ୍ତ କୁମାରୀ କେଳୀରତା ଥିଲା ।

'ବୀଣା –'

ଯେଉଁ ତରଣ ସଂପାତରେ ସମୁଦ୍ର ପ୍ରାନ୍ତ ମରୁ ଭୂମିରେ ଢେଉ କଳ ଫୁଟି ଆସୁଥିଲା, ସହସା ତାହା ଅଟକି ଗଲା । ବୀଣାର ମୁଖ ନଇଁ ଆସିଲା !

କୁଆଡ଼େ ଯାଉଚ – ?

ନୀରବ ।

କହବନ ?

ଆପଣ ?

ତୁମ ଅପେକ୍ଷାରେ —

ସୈକତ ଉପରେ ବସି ଚଣ୍ଡ କହିଲି, ଆସ—

ଆସୁଚି— ଏତିକ କହି ବୀଣା ଆଗେଇ ଚାଲିଲା ।

ଆସିବନି ?

ବୀଣା ମୋ ଆଡ଼େ ଥରେ ଚାହିଁଲା । ତାର ଚନମ୍ର କଟାକ୍ଷ ତଳେ ଯେପରି ଏକ ଅଜଣା କରୁଣ ଭାଷା ଧ୍ୱନିତ ହୋଇ ଉଠୁଥିଲା ।

ବୀଣା ମୋ ପାଖରେ ବସିଲା ।

ସମୁଦ୍ରର ପ୍ରଶାନ୍ତ ବକ୍ଷରେ ଧୂସର ସନ୍ଧ୍ୟା ଧୀରେ ଅପ-ସରି ଯାଉଥିଲା । ସେଇ ସୌନ୍ଦର୍ଯ୍ୟକୁ ମୁଁ ଉପଭୋଗ କରୁଥିଲି ବୀଣାର ଅପୂର୍ବ ସୁଷମା ଆଶ୍ରୟରେ ।

ବୀଣା ମୋ ପାଖରେ ବସି ତମେ କିଛି ଅପମାନ ପାଇନାହିଁତ ?

ଅପ୍ରସ୍ତୁତ ସ୍ୱରରେ ସେ କହିଲା, କଣ ?

ପଳାଇବ ବୋଲି କହୁଥିଲ ଯେ :

ନୀରବ ।

କହୁନ ?

ଚାଲିଯିବ—

—ବନ୍ୟାର ଦୁଇଟି ଫୁଲ—

ଫେର୍ ନେହିଲା କି'ଣ ?

ଲୋକେ କଣ ଭାବବେ ?

ଏଇଠିତ କେହି ନାହାନ୍ତି ।

ଉତ୍ତର ନଦେଇ ସେ ଭୂମିରେ ଗାର କାଟିବାରେ ଲାଗିଲା ।

ଦାନ ଅଛି ?

ହଁା ହାତରେ ଉଠାଇ ମୋର କୋଳକୁ ଫିଙ୍ଗି ଦେଇ ଖେଳରେ ଲଗିଲା ।

କୌତୁକରେ ପଚାରିଲି—ଖରା ହାତଟା କାମ —

ବୀଣାର ଶବୁକ ତଳେ ହାସରେଖା ଝଳିଲି ପରି ଚହଲି ଗଲା । ହାତ ଧରି ପାଖକୁ ଟାଣିଲି ।

ବ୍ୟସ୍ତ ହୋଇ କହିଲା, ଆପଣ—

ଆସିବନି ?

ଏଇଠିତ ବସିଚ—

ସତରେ କ'ଣ ମୋତେ ଭଲ ପାଅ ବୀଣା ?

ଲଭ କ'ଣ —ତାର ଶୁଷ୍କ କଣ୍ଠରୁ ଆସିଲା ଉତ୍ତର ।

କି ?

ମୁଁ—

କହୁନ –

ଜାଣ – ଅଟ୍ଟଷ୍ଟ ସ୍ୱରରେ କହିଲା ବୀଣା । କଣ୍ଠ ସ୍ୱରରେ ଯେପରି ବହୁଯୁଗର ଅଭିଯୋଗ ଲାଗି ରହିଛି ।

ହଁ, ମୁଁ ଜାଣେ ବୀଣା, ତୁମେ ଅନ୍ଧ କନ୍ୟା, ତମର ବାପ ଅନ୍ଧ, ଆଉ ମା ଓଡ଼ିଆ ।

ତଥାପି—

କ'ଣ ?

ବାଟା ମା

ତମେ ଶୁଣିଥିବତ ସେମାନେ ଆଗରୁ ଏହା ଠିକ୍ କରିଛନ୍ତି ।

ନା

ହେଉ, ମୁଁ ତ କହୁଚି

କିନ୍ତୁ—

ମୋ କଥାରେ ବିଶ୍ୱାସ କରୁନ ?

ନା, ଭାବୁଚ ଆମର ସ୍ନେହ—

ଚନ୍ଦ୍ରବଦନ ପାଇଁ ରହିବନି ବୋଲି ? କିନ୍ତୁ ବୀଣା ମୋର ହୃଦୟକୁ ଥରେ ଚାହିଁ । ବୁଝିବ ଏ ମନ ମୂଳରେ ତମେ କମିତି ବାନ୍ଧି ହୋଇ ରହିଚ । କ୍ଷଣକର ଇନ୍ଦ୍ରିୟ ଲାଳସାରେ ତମର ଜୀବନ ନଷ୍ଟ କରିବାକୁ ମୁଁ ଯାଉନି । ଭାବୁଚ ମୁଁ ଛଳନା କରୁଚି—। କିନ୍ତୁ ତମକୁ ଠକିବା ପାଇଁ ମୁଁ ଏ ସ୍ନେହ

## —ବନ୍ୟାର ଦୁଇଟି ଫୁଲ—

କେବେ ମାଗୁନ— କହୁ କହୁ ଝୋପାଏ ଲୁହ ବୀଣାର କର-ତଳ ଉପରେ ଝରିପଡ଼ିଲା । ସେ ଚକିତ ହୋଇ କହିଲା, ଏ କ'ଣ--

ତୁମ ହାତରେ ଯେତେ କହିଲ, କଣ୍ଠରୁଦ୍ଧ ବୀଣା, ଦୁଃଖ କରି ମୁଁ ଅଶ୍ରୁ ଢ଼ାଳିନ । ଢ଼ାଳିଚି ତୁମର ସ୍ୱର୍ଣ୍ଣ କର-ତଳ ଉପରେ ଏ ମୋର ଜୀବନ-ମୁକ୍ତା ବିନ୍ଦୁ କିପରି ଖେଳି ଉଠେ ବା ତାହା ଦେଖିବା ପାଇଁ —ଆଜି ଏ ମୋର ସମର୍ପଣ ।

ବୀଣା କିଛି କହି ପାରିଲା ନାହିଁ । ତାର କଣ୍ଠ ଏକ ପ୍ରକାର ବାଷ୍ପରୁଦ୍ଧ ହୋଇ ଯାଇଥିଲା ।

ସନ୍ଧ୍ୟାକାଳ ଚାଲିଗଲା । ନୀରବତା ଭିତରେ ଚକ୍ଷୁ ନମୀ-ଳିତ କରି ବୀଣା କହିଲା, ସ୍ୱପ୍ନ ଆଗରୁ—

ଜଳଦମାଳା ଗମ୍ଭୀର ଗର୍ଜନ କରି ଉଠୁଥିଲା । ବଗାଗ ପାଟଣୀର ପ୍ରଶସ୍ତ ସମୁଦ୍ର ପ୍ରାନ୍ତ, ଉପରେ ତାରକାର କ୍ଷୀଣ ଜ୍ୟୋତି ।

ବୀଣାର ହାତକୁ ଚାପି ଧରିଲି । ସେ ବ୍ୟସ୍ତବ୍ୟସ୍ତ ହୋଇ ଚାହିଁ ରହିଲା ମୋ ଆଡ଼େ । ଦୂର ଦୀପସ୍ତମ୍ଭର ଆଲୋକ ହଠାତ୍ ଆମ ଉପରେ ପଡ଼ିଲା । ଯିବ—

ଚାଲିଯିବ ?

ହଁ, ରାତି ହେଲାଣି, ବାପା କ'ଣ ଭାବିବେ ।

ନାରୀର ଭୀରୁତା ସହଜ ବୋଧ ହେଲେହେଁ ସମସ୍ତ

ବେଳେ ସହାନୁଭୂତି ଦେଖାଉଛନ୍ତି । କହିଲି, ସବୁ ପ୍ରକୃତରେ ସ୍ନେହ କରୁନ, ବୃଥାରେ ମୋର ପ୍ରାଣକୁ ଜାଳି ପୋଡି ଦିଅନା ଏଣ—

ଭୁଲ ବୁଝନ୍ତୁନା—ଆସିବି ।

କାଲିକି ଆସିବ ?

ହଁ ।

ପ୍ରତିଶ୍ରୁତି ନେବାପାଇଁ ହାତ ବଢାଇଲି ।

ସେ ମୋ ଆଡକୁ ପ୍ରଶ୍ନବାଚକ ଦୃଷ୍ଟି ନିକ୍ଷେପ କଲା ।

ବିଶ୍ୱାସ କରୁନାହାନ୍ତି— ଏତିକି କହି ସେ ଟିକିଏ ହସିଲା— ଯେପରି ସେଇ ହସ ଭିତରେ ପୁରୁଷର ବିଶ୍ୱାସ ଅପମାନିତ ହୋଇଛି ।

ମୁଁ ହାତକୁ ଫେରାଇ ଆଣିଲି ।

ତପନର ମୟୂଖରେ ଧରଣୀ ଯେ ଦିନ ହୋଇଥାଏ ଉଜ୍ଜ୍ୱଳ ।

ଗିରିଧରବାବୁଙ୍କ ବୈଠକ ଖାନା । ସୁସଜ୍ଜିତ ପ୍ରକୋଷ୍ଠ ଭିତରେ ଆମେ ବାପ ପୁଅ ଦୁହେଁ ଆଉ ଗିରିଧର ବାବୁ । ତାଙ୍କ ପାଖରେ ଲଳିତା ଦେବୀ । ପ୍ରଥମ ପରିଚୟର ଆଳାପ ନିବିଡ ଭାବରେ ଚାଲିଥିଲା । ଅଠର ବର୍ଷର ତରୁଣ ମୁଁ ସେଇ ମେଳରେ ନିଃସଙ୍ଗତା ଅନୁଭବ କରିବା ସ୍ୱାଭାବିକ । ଅନ୍ୟମନସ୍କ ଭାବରେ ରବିବର୍ମାଙ୍କ ସୃଷ୍ଟି ତୁଳୀ ରଞ୍ଜିତ ଚିତ୍ର ଆଡେ ଚାହିଁ ରହିଥିଲି । ଚିତ୍ରର ଭୂମିକାରେ ପ୍ରକୃତି-ଚଳମିତ ବନାଞ୍ଚଳର ପୁଷ୍ପ-ସମ୍ଭାର । ଦୂର୍ବାଦଳର ତଳ୍ପ ଉପରେ ଶୋଇ ଥିଲେ ଦୁଷ୍ମନ୍ତ-ରାଣୀ । ହାତରେ ଲେଖଣୀ— ପଦ୍ମପତ୍ର ଉପରେ

ଭବାଙ୍କନର ଅପୂର୍ବ ଛବି— ପାଟରେ ଦୁଇ ସଙ୍ଗିନୀ—ଅନୁସୂୟା ଓ ପ୍ରିୟମ୍ବଦା— ଯେପରି ତାଙ୍କର ପ୍ରଣୟରେ ହାସ୍ୟ ଝରାଇ ମଣ୍ଡନ କରିବା ପାଇଁ ଏ ତାପସ କୁମାରୀ ଦୁହେଁ ଜନ୍ମ ହୋଇଛନ୍ତି । ଅନନ୍ତ ଦୂରରେ ମୃଗୁଣୀର ଛନ ଛନ ଶୋଭା ।

ନିପୁଣ ଶିଳ୍ପୀର ପ୍ରତିଭା ବିକାଶ କଳ୍ପନାରେ ମୁଁ ତନ୍ମୟ ହୋଇ ଯାଇଥିଲି ।

କେହି ଜଣେ କିଶୋରୀ ଆସି ମୋର ଗୋଡ଼ ତଳେ ପ୍ରଣାମ ଜଣାଇଲା । ତନ୍ମୟତା ଭାଙ୍ଗିଗଲା । ମନେ ହେଲା ଏ ପ୍ରତିମାର ଯୌବନକୁ ରଞ୍ଜିତ କରିବା ପାଇଁ ସତେ ଯେପରି କିଏ ଅମୃତ କୂଚିକା ଧରି ପ୍ରଭାତର ସଘନ ଅରୁଣିମାକୁ ଆଙ୍କି ଦେଉଛି ।

ବଡ ଘର । ବେଶୀ ବେଳ କିଶୋରୀର ରୂପ ନିରେଖିବା ପାଇଁ ଲୋକଚକ୍ଷୁ ଅନୁମତି ଦେବନାହିଁ । ଭଦ୍ରତାର ଖାତିରରେ ହେଉ ବା ମୋର ଦୃଷ୍ଟିକୁ ଆକର୍ଷଣ କରିବା ପାଇଁ ହେଉ କିଶୋରୀ କ୍ଷଣ କାଳ ଛିଡ଼ା ହେଲା । ତଥାପି ମୁଁ ଚାହିଁ ପାରିଲି ନାହିଁ । ପାଖରେ ମାନ୍ୟ ଗଣ୍ୟ । ନୂତନ ବନ୍ଧୁ ପରିଚୟ ଭିତରେ ସେ ଯାହାର ଗୌରବ ବା ଭଦ୍ରତା ଦେଖାଇବାରେ ଜାଗ୍ରତ ଥିଲେ । କିଶୋରୀ ଚାଲିଗଲା । ମୁଁ ଚାହିଁ ନ ଚାହିଁଲା ପରି ରହିଲି ।

ସେଦିନର ସାନ୍ଧ୍ୟକ ସମାବେଶ ଭିତରେ ମୋର ବାପାଙ୍କ ସହିତ କିଶୋରୀର ବାପା ଗିରିଧର ବାବୁଙ୍କର ପ୍ରଥମ

ସାକ୍ଷାତ ହେଲା । ଏ ପରସ୍ତର ପରିଚୟ ମଝିରେ ଥିଲେ ତାର ମାମୁଁ ଗିରିଶବାବୁ ।

କଥାବାର୍ତ୍ତା ଶେଷରେ ଗିରିଧରବାବୁ ନୂତନ ବନ୍ଧୁତ୍ୱର ଲୌକିକ ଦୃଷ୍ଟିରେ ବା ପ୍ରକୃତ ସ୍ନେହର ଆକର୍ଷଣରେ ଆମକୁ ଥରେ ତାଙ୍କ ଘରକୁ ନିମନ୍ତ୍ରଣ କଲେ । ତେଣୁ ଆମେ ଯାଇଥିଲୁ । ଗିରିଧର ବାବୁ ଶଙ୍କି ଶଙ୍କି ବାପାଙ୍କୁ କହିଲେ,— ଘରୀ ଭୋଜନଟା ଏଇଠି ଚଳିବ—

ତାଙ୍କର ଶଙ୍କାର କାରଣ ବାପା ଜାଣିଗଲେ । ଟିକିଏ ହସି କହିଲେ, ଗୌରବର କଥା ।

ଆମେ ଓଡ଼ିଆ ଆଉ ଗିରିଧରବାବୁ — ସେ ଖାଣ୍ଟି ଆନ୍ଧ୍ର । ଗୋଷ୍ଠୀ ଓ ଜାତି ଭିତରେ ପ୍ରଭେଦ କିଛି ନାହିଁ । ତଥାପି ଦଶ ବର୍ଷ ତଳର ସମାଜ । ବାପାଙ୍କ ସ୍ୱୀକାର ଜାଣି ସେ ଆନନ୍ଦରେ ଧନ୍ୟବାଦ ଅର୍ପଣ କଲେ ।

ସେଇ ଗୋଟିଏ ଦିନର ଆତିଥ୍ୟ ସତ୍କାର ପାଇ ବାପଙ୍କ ହୃଦୟରେ ନିବିଡ଼ ବନ୍ଧୁତ୍ୱ ସୃଷ୍ଟିର କଳ୍ପନା ଖେଳି ଯାଇଥିଲା ବୋଧହୁଏ । ଘରକୁ ଫେରି ମାଁଙ୍କୁ ସେ ଯାହା କହୁଥିଲେ, ଫଲଗ୍ନ କକ୍ଷରେ ଥାଇ ଶୁଣିଥିଲି । ସେତେବେଳେ ମୋର ମନେ ହେଲା ପେପରି ସେଇ କିଶୋରୀର ଯୌବନଶ୍ରୀକୁ ଆଖି ଭରି ନଦେଖି ପାରି ବାସ୍ତବିକ ମୁଁ କେଡେ ଭୁଲ କରିଚି । ଦେଖି ଆସିବା ପାଇଁ ମନେହେଲା । କିନ୍ତୁ ଯଦି ସେ ମୋତେ ଭଲ ନପାଏ ?

ଯାହା ହେଉ ଏ ସମ୍ଭାଷଣ ଶୁଣି ମୁଁ ବିଶେଷ ଆନନ୍ଦ ଅନୁଭବ କଲି । ଯୌବନ ସୁଲଭ କଳ୍ପନାରେ ମୁଁ ବାସ୍ତବତାକୁ ପାଇବି କି ନାହିଁ ସେ ଚିନ୍ତା ମତେ ବିବ୍ରତ କଲା ।

ଗୃହଦ୍ୱାର ଗଲା । ମୋର ହୃଦୟର କଥା ବୁଝିବ ବା କିଏ ? ଅସ୍ତମିତ ଦିନମଣିକୁ ଚାହିଁ ଅଳସ ଭଙ୍ଗେ, ସମୁଦ୍ର ଲହରୀ ଦେଖି ହାଇ ମାରେ, ମୃଦୁ ସମୀରଣର ପରଶ ପାଇ ସ୍ୱପ୍ନ ଦେଖେ ।

ବଡ଼ ଘରେ ଜନ୍ମ ହୋଇ ଯେଉଁ ଦାୟିତ୍ୱ ମୁଣ୍ଡାଇଛି ସେଥି ପାଇଁ ବାହୁନେ । ମାନ ମର୍ଯ୍ୟାଦାର ଶୃଙ୍ଖଳରେ ବେଷ୍ଟିତ ହୋଇ ପ୍ରଣୟକୁ ଆହୂତି ଦେବାର ଏହା ନୁହେଁ ତ ଆଉ କ'ଣ ? କିଶୋରୀକୁ ଥରେ ଦେଖି ଆସିବା ପାଇଁ ପିପାସା ଜାଗି ଉଠିଲା । ତଥାପି ସେତ ଆଉ ମାମୁଲି ଘରର ଝିଅ ନୁହେ । ସେ ତାର ଶୃଙ୍ଖଳାବଦ୍ଧ ସମାଜ ଭିତରେ । ଆଉ ଦେଖିବାର ଉପାୟ କ'ଣ ? ଏହାହିଁ ତ ଆମର ସାମାଜିକ ନିବନ୍ଧନ ।

ସେ ଦିନ ଆମ ଘରେ ଭୋଜନ କରିବା ସକାଶେ ଗିରଧରବାବୁଙ୍କୁ ନିମନ୍ତ୍ରଣ କରିବା ପାଇଁ ବାପା ମୋଟରରେ ଚଢ଼ିଲେ । ଏ କଥା ମୁଁ ଜାଣେ । ହଠାତ୍ ଯାଇ ଗାଡ଼ିରେ ବସିବା ପାଇଁ ଉଦ୍‌ଗ୍ରୀବ ହେଲି । ବାପା କହିଲେ, ତୁ କୁଆଡ଼େ ?

ତାଙ୍କର କଣ୍ଠରେ ରୁକ୍ଷତା ଥିଲା ପରି ମତେ ଲାଗିଲା । କିଛି ନ କହି ଘରକୁ ଚାଲି ଆସିଲି । ମୁଣ୍ଡ ଗୋଳି ହୋଇଗଲା —

ଯେପରି ସେ ମୋର ଭାବନାକୁ ଜାଣି ପକାଇ ଏ କର୍କଶ ବାଣୀ ଶୁଣାଇଚନ୍ତି । ତା' ଉପରେ ଝଣକ ପରି ଏହା ମନେ ବାଧିଲା ।

ଗିରିଧରବାବୁ ଆସିଲେ । ଅନାବନା ଗପରେ ଭୋଜନ ଶେଷ ହୋଇଗଲା । ମୋଟର ଚଢ଼ିଲା ବେଳକୁ ମୋର ପ୍ରଣାମ ନେଇ ମଥା ହଲାଇଲେ । କିନ୍ତୁ ଭାଷା ଟିକିଏ କହିଲେ ନାହିଁ ।

ଅନେକ ଦିନ ଚାଲିଗଲା । ଗିରିଧରବାବୁ ଆମ ଘରକୁ ଆସନ୍ତି, ବାପା ବି ତାଙ୍କ ଘରକୁ ଯାଆନ୍ତି । କିନ୍ତୁ ବାପାଙ୍କ ଠାରୁ କଟୁ କଥା ଶୁଣିବା ଦିନରୁ ମୋର ମନ ବିରକ୍ତ ହୋଇ ପଡ଼ିଲା । ଯିବା ପାଇଁ ସ୍ପୃହା ଥିଲେହେଁ ମନ ମାରି ରହିଲି ।

ସେ ଦିନ ସନ୍ଧ୍ୟାର କ୍ଷୀଣାଲୋକରେ ଷାପ୍ଟିଜଲର୍ ମୋଟର ଧୀରେ ଧୀରେ ଆସୁଥିଲା ସମୁଦ୍ର ପ୍ରାନ୍ତର ସୁବିଶାଳ ମାର୍ଗ ଉପରେ । ଗାଡ଼ି ଆମ ମୋଟର ପାଖରେ ଛିଡ଼ା ହେଲା । ହଠାତ୍ ମୋର ଦୃଷ୍ଟି ପଡ଼ିଲା ଡ୍ରାଇଭର୍ ଉପରେ । କିଶୋରୀ ଧରିଛି ଷ୍ଟିରିଙ୍ଗ । ଆନନ୍ଦ ଟିକିଏ ଉପଭୋଗ କରିବାକୁ ପ୍ରଶ୍ରୟ ନ ଦେଇ ପଛ ସିଟ୍‌ରୁ ଗିରିଧର ବାବୁ ପଚାରିଲେ, ଗାଡି କ'ଣ ହେଲା ?

ବାପା ନଥିଲେ । ନମସ୍କାର କରି କହିଲି, ପାଞ୍ଚର୍ ପଡ଼ିଚି ।

ସ୍ନେହରେ ମୋର ହାତଧରି ଗାଡ଼ିରେ ବସାଇ ଦେଲେ ।

ଗାଡି ଚାଲିଲା । କିଶୋରୀକୁ ଚାହିଁବା ପାଇଁ ମୋର ଶଙ୍କା ହେଲେ ବି ଥରେ ଥରେ ଚାହିଁ ଦେଉଥିଲି । କିଶୋରୀ କିନ୍ତୁ ମୋତେ ଦେଖିବା ପାଇଁ ଅବକାଶ ଦଇ ପାରିଲା ନାହିଁ ।

ମୋଟର ଯାଇ ପୋର୍ଟିକୋରେ ଠିଆ ହେଲା । ଗିରି-ଧରବାବୁ ମୋ ଉପରେ ଆଦର ଅଧିକାର ଦେଖାଇ କହିଲେ, ଫ୍ରେଣ୍ଡ୍ ଏଇଠି ଖାଇ ଯିବ ।

ଗିରିଧରବାବୁଙ୍କ ଏ ସ୍ନେହ ଆଦେଶ ଶୁଣି କିଶୋରୀ ମୋ ଆଡେ ଥରେ ଚାହିଁଲା । କେଉଁଥି ପାଇଁ ଏ ଦୃଷ୍ଟି, ତାହା ବୁଝି ପାରିବାର ସାମର୍ଥ୍ୟ ମୋର ସେତେବେଳକୁ ଆସି ଯାଇ ଥିଲା । ତଥାପି ବିଷମ ସମସ୍ୟାରେ ପଡି ଉତ୍ତର ଦେଲି, ବାପାଙ୍କୁ କହିନ ।

ଗିରିଧରବାବୁ କହିଲେ, ହେଉ, ସେ କିଛି କହିବେନି, ମୁଁ ଜାଣେ ।

ଆପଣା ପାଦର ଅଙ୍ଗୁଳିକୁ ଚାହିଁ କିଶୋରୀ ଚାଲିଗଲା । ମୁ ଗିରିଧରବାବୁଙ୍କ ସାଥିରେ ଯାଇ ବୈଠକ ଖାନାରେ ବସିଲି । ଅଠର ବର୍ଷର ଟୋକା ମୁଁ ତାଙ୍କ ସଙ୍ଗରେ କ'ଣ କଥା ହେବି ? ବଡ ନିସଙ୍କତା ଅନୁଭବ କଲି । ସେ ଅଫିସ୍ କାଗଜ ପତ୍ର ଦେଖିବାରେ ବ୍ୟସ୍ତ ରହିଥିଲେ । କ୍ଷଣ କାଳ ପରେ କାଗଜ ଉପରୁ ମୁହଁ ଟେକି କହିଲେ, ଭିତରକୁ ଯାଉନ ।

କିଛି କହି ପାରିଲି ନାହିଁ । ସେ ମୋ ମନ କଥା ଜାଣି

କହିଲେ, ଲାଜ କରୁଚ, ଯ ।

ଯିବାକୁ ପଡ଼ିଲା । ସେତେବେଳେ କଟଣାରୀ ଗାନ ଭାଙ୍ଗୁଥିଲା । ଆଉ ତାର ଦୃଷ୍ଟି ସେଇ ରଚନାରେ ନିବଷ୍ଟ ରହିଥିଲା । ମୁଁ। ଲଳିତା ଦେବୀ ମୋର ଆଗମନ ଦେଖି କହିଲେ, ବୀଣା ଫ୍ରେଣ୍ଡ୍ ଆସିଚନ୍ତି ।

ବୀଣାର ଗାନ ଭଙ୍ଗା ଅଧରେ ରହିଗଲା । ବସନ୍ତ କାଳର କୁରଙ୍ଗୀ ପରି ସେ ଧାଇଁ ଯାଇ ଲୁଚିଗଲା । ଲଳିତା ଦେବୀ ଡାକିଲେ, ବୀଣା, ବୀଣା —

ଉଁ —

ଆ — ସ୍

ଆସିଲା ନାହିଁ ।

ଆ — ସ୍

ଆଖି ପତାକୁ ନୁଆଁଇ ଆସିଲା ବୀଣା । ପତଳା ଦେହ, ସରୁ ସରୁ ବାହୁ, ତଥାପି ଦେଖିବାକୁ ସୁନ୍ଦର ।

ଲଳିତା ଦେବୀ ଆଉ ମୁଁ ସେତେବେଳକୁ ସୋଫାରେ ବସି ସାରିଥିଲୁ । ଅପରାଧୀନିଙ୍କ ପରି ବୀଣା ନୀରବରେ ଠିଆ ହେଲା ।

ଲଳିତା ଦେବୀ କହିଲେ, ଫ୍ରେଣ୍ଡ୍ ପାଖରେ ତୁ ଲୁଚୁଚୁ କିଆଁ ? ସେତ ଆମ ଘର ପିଲା ।

ବୀଣା ଆହୁରି ଲଜ୍ଜିତା ହେଲା । ତତ୍ପରେ ଲଳିତାଦେବୀ ବୀଣାକୁ ମୋ ପାଇଁ ପାନ ଆଣି ଦେବାକୁ କହିଲେ । ବୀଣା ଥାଳଟିରେ ପାନ ଆଣି ଟେବୁଲ୍ ଉପରେ ଥୋଇ ଦେଲା ।

ଲଳିତାଦେବୀ ମୁହଁ ବୁଲାଇ ପୂଜାରୀକୁ ଡାକିଲା ବେଳକୁ ବୀଣା ଆଡେ ମୁଁ ଥରେ ଚାହିଁଲି । ସେତେବେଳେ ତାର ସୁନ୍ଦର କଳା ଦୁଇଟି ଆଖି ମତେ ସହାନୁଭୂତି ଜଣାଇଲା ପରି ବୋଧ ହେଲା ।

ଏଇ ପରି ଦୁଇ ତିନି ମାସ ବିତିଗଲା । ଯିବା ଆସିବାର ଘନିଷ୍ଠତା ନିବିଡ ହେଲା । ଆମ ଦୁହିଙ୍କ ଭିତରେ ସ୍ନେହର ଅଙ୍କୁର ପତ୍ର ଫୁଟିଲା । ଆଗରୁ ଆମ ବାପା ମାଁଙ୍କ ମଧ୍ୟରେ ଘନିଷ୍ଠତା ବଢ଼ିଛି । ବୀଣା ଆମଘରେ ଅବାଧିତ ଭାବରେ ବୁଲି ମୋର ମାଁଙ୍କଠୁଁ ମାତୃତ୍ୱର ମଧୁର ବାଣୀ ଶୁଣେ । ମୁଁ ବି ଲଳିତାଦେବୀଙ୍କଠୁ ସେଇ ଆଗ୍ରହ ପାଏ । ଲଳିତାଦେବୀଙ୍କର ପୁଅଟି କେହି ନଥା'ନ୍ତି । କେବଳ ଦୁଇଟି ଝିଅ । ତେର ବର୍ଷର କିଶୋରୀ ବୀଣା, ଆଉ ତାର ଭଉଣୀ ଅରୁନ୍ଧତୀ ସେତେବେଳକୁ ସାତ ବର୍ଷର ପିଲା ।

ଧରଣୀ ଉପରେ ବର୍ଷା, ଶରତ, ହେମନ୍ତ, ଶିଶିରର ପ୍ରାକୃତିକ ଆବର୍ତ୍ତନ ଚାଲିଗଲା । ଏ ଋତୁ ବିବର୍ତ୍ତନ ଆମେ ଦେଖିଲୁ । କିନ୍ତୁ ଭୋଗି ପାରିଲୁ ନାହିଁ । ବୀଣାର ଯୌବନ ବେଦୀରେ ମୋ ତନୁ ସମର୍ପଣ ଏ ଋତୁ ପର୍ଯ୍ୟାୟକୁ ସରସ

କେତେବାର ପରସ୍ପର ମିଳିଲା ନାହିଁ । ବଡ ଘରେ ଜନ୍ମ ହୋଇ ଆମେ କି ସୁଖ ପାଇଲୁ ?

ପରସ୍ପରକୁ ଖୋଜି ଖୋଜି ବରଷକୁ ହେଗି ହେଗି ଦେଖିଲୁ, ବସୁଧାରେ ଆସିଲା ନବ ବସନ୍ତର ମହୋତ୍ସବ ।

ବସନ୍ତ-ରାଣୀ ତାର ନବ-ବିକଶିତ କୁସୁମ କେତନ ଉଡାଇ ବିଶ୍ୱରେ ପ୍ରଣୟର ଅଭିଯାନ ଆରମ୍ଭ କଲା । ସେଇ ମଧୁର ବେଷ୍ଟନୀ ଭିତରେ ଆମର ପ୍ରଥମ ମିଳନ ହେଲା ସେଇଠି—ସେଇ ସ୍ୱର୍ଣ୍ଣମୟ ବେଦିକା ଉପରେ ।

କଲେଜରୁ ଫେରିଲି ବେଳକୁ ବାଜିଲା ସାଢ଼େ ପାଞ୍ଚ । ମନ ଭିତରେ କେଉଁ ଅପୂର୍ବ ଭାବାବେଶ ଜାଗି ଉଠିଥିଲା । ନବ ପୁଷ୍ପିତା ଅବନୀ ମୋର ଚକ୍ଷୁରେ ଯେଉଁ ସୁଧାଞ୍ଜନ ଲଗାଇ ଦେଇଥିଲା, ସେଥିରେ ମୋତେ ଦିଶୁଥିଲା କେବଳ ସେଇ ଲାବଣ୍ୟ ଶ୍ରୀ— ନୟନର କାନ୍ତି— ବୀଣା । ଏକ ଅପୂର୍ବ ସ୍ନିଗ୍ଧତା ଭିତରେ ଶରତର ଖଣ୍ଡ ମେଘ ପରି ମୋର ଭାବନା ଭାସି ଉଠୁ ଥିଲା— ଜଣା ଯାଉଥିଲା ଏ ସଂସାର ଆନନ୍ଦମୟ— ଦୁଃଖର ସତ୍ତା ବି ସେଥିରେ ନାହିଁ । ଜୀବନ ଫେର୍ ଏତେ ସୁନ୍ଦର ଏତେ ମଧୁମୟ !

ସାହେବୀ ପୋଷାକ ବାହାର କରି ଧୋତି ପିନ୍ଧି ପଞ୍ଜାବୀ ଲାଲ୍ଟ ଲଗାଇଲି । ଆଇନା ପାଖରେ ବସି କେଶ

ଉପରେ ଭୃଙ୍ଗରାଜ ତେଲ ଟିକିଏ ଲଗାଇଲା ବେଳକୁ ଶୁଭିଲା, ନନା —

କିଏ ?

କଲେଜରୁ ଫେରିଲଣି ? ଗେହ୍ଲା ସ୍ୱରରେ କହିଲା ସୁମ ।

ସୁମ ମୋର ଆଠ ବର୍ଷର ଭଉଣୀ । ଷ୍ଟୁଆର୍ଟ ସ୍କୁଲର ଦ୍ୱିତୀୟ ଶ୍ରେଣୀ ପଢ଼େ । କହିଲି, ତମ ପରୀକ୍ଷା ଶେଷ ହୋଇଚି ?

ହଁ, I got First Prize — ସାଇକଲ୍‌ଟେ ଦେବ ବୋଲି କହିଥିଲ ଯେ କେବେ ଦେବ ?

କାଲି ଧଳାଙ୍କୁ ଯାଇ କିଣି ଆଣିବା — ବାବାଙ୍କୁ କହି-ଲୁଣି ତ ?

ହଁ —ଏଇତ କହି ଆସୁଚି—

ଆଚ୍ଛା, ଅରୁ ପାଶ କରିଛି ତ ?

ସେ ଗୋଟାଏ donkey— ଥାର୍ଡ ପ୍ରାଇଜ୍ ପାଇଚି, ବେଶ୍ ପଟୁତା ଦେଖାଇ କହିଲା ସୁମ ।

ପୂଜାଙ୍କ ଜଳଖିଆ ରଖି ଠିଆହୋଇଛି — ଘଣ୍ଟା ଦେଖିଲି ଛଅ ବାଜିବାକୁ ପାଞ୍ଚ ମିନଟ୍ ।

କହିଲି, ନା, କଫି କପ୍‌ଟେ କରିଦେ ତ—

ପୂଜାଙ୍କ କିଛି ନ କହି କଫି କରିବାରେ ଲାଗିଲା ।

ଦର୍ପଣରେ ବେଶ-ପରିପାଟୀ ଥରେ ଚାହିଁଲା ବେଳେ

ସୁମ ମୋର ସିଗାରେଟ୍ କେଶ୍‌ଟି ଧରି ଚହ ଚହ କହିଲା, ଏଇଟା ବାବାଙ୍କୁ ନେଇ ଦେଖାଇ ଦେବନା—

ମୋ ଠାରେ ଏ ତା'ର ପ୍ରତିବାଦନର ହାସ୍ୟ କୌତୁକ । କହିଲି, ଦେଖ—

ଉଁହୁଁ – ଦେଖା ବୋଲି କହିଲଣି— ହେଉ ଯାଉଚି । କହି ସୁମ ଆଗକୁ ଦୁଇ ପାହାଣ୍ଡ ଚାଲିଗଲା । ରୁମାଲ୍‌ରେ ଟିକଏ ପେରସ୍ ହେଣ୍ଟ୍ ଅଜାଡି କହିଲି, ଗ୍ରେଟ ଭଉଣୀଟି ପରା, ମୋ କଥା ସେ କାହାକୁ କହିବ କି—

ସୁମ ଫେରି ଆସି କହିଲା, ଆଜି ମୋତେ ବୁଲାଇ ନେବ ନା ?

ନା ଆଜି ନୁହେଁ —କାଲିକି ।

ସୁମ ମୋ ଠାରେ ଅଳି କଲା — ଛଳନାରେ ଉଁ ଉଁ ଉଁ କରି କାନ୍ଦିବାର ଅଭିନୟ କଲା । କହିଲି, ଆସ୍, ଆଗେ ଜଳଖିଆ ଟିକଏ ଖା ।

ବୋଧହୁଏ ସୁମ ଭାବିଲା ମୁଁ ତାକୁ ବୁଲାଇ ନେବା ପାଇଁ ସମ୍ମତ ହୋଇଚି । କେସ୍‌ରୁ ସିଗାରେଟ୍ ଗୋଟାଏ ବାହାର କରି ମୋର ତୁଣ୍ଡରେ ପୁରାଇ କହିଲା, ନିଆପେଡ଼ି କାହିଁ ?

ମୁଁ ସିଗାରେଟ୍‌ରେ ନିଆଁ ଲଗାଇଲି । ସୁମ ଝୁଟ ଝୁଟ କରି ପୁରି ଖାଇବାରେ ଲାଗିଲା । କଫି ଢୋକାଏ ପିଇ କହିଲା, ଚେଯ୍‌ଟି ନାକୀ, ଧରି ଖା', ଏତେ ଡରର କାହିଁକି ?

— ବନ୍ୟାର ଦୁଇଟି ଫୁଲ —

ସୁମ ଦୁଇଟା ପୁରି ଖାଇ ହାତ ଧୋଇଲା । କହିଲା, ଆସ ଯିବା—

କୁଆଡେ ?

ବୀଚ୍ ଆଡେ—

ନାଁ, ଆଜ ନୁହେଁ, କାଲିକି ।

ତାର ପ୍ରଫୁଲ୍ଲ ମୁହଁ ମଉଳି ଗଲା । ତଥାପି ମୋ ପଛେ ପଛେ ମୋଟର ପାଏ ଆସିଲା । ବୁଝାଇ କହିଲି, ନା, ସୁମ, କାଲିକି ତୋତେ ନିଶ୍ଚୟ ନେବି —

ସୁମ ଦୁଃଖରେ ମୁଣ୍ଡ ହଲାଇଲା । ଭଉଣୀର ଅଳି ଦଳି ଗ୍ରହଣ କରିବା ପାଇଁ ସେତେବେଳେ ମୋର ସମୟ ନ ଥିଲା ।

ଗାଡ଼ିକି ଷ୍ଟାର୍ଟ ଦେଲି ।

ଡାକରା ଆସିଲା — ବାବା ଡାକୁଚନ୍ତି । ମୁଣ୍ଡ ଉପରେ ଯେପରି ବଜ୍ର ପଡ଼ିଲା । ସ୍ୱିଚ୍‌କୁ ଅଫ୍ କରି ବାବାଙ୍କ ପାଖରେ ଯାଇ ଛିଡ଼ା ହେଲି । ସେତେବେଳେ ସେ କୌଣସି ଏକ ପ୍ରବନ୍ଧ ରଚନା ଶେଷ କରିବା ଉପରେ । କାଗଜ ମୋ ହାତକୁ ବଢ଼ାଇ କହିଲେ, ଏଇଟାକୁ କାପି କରିଦେଇ —

କହିଲି, କାଲିକି କରିଦେବି—

ନା, କାଲିକି ପତ୍ରିକାକୁ ପଠାଯିବ—ଆଜି ଲେଖିଦେ ।

ବାବାଙ୍କର ଆଦେଶ । ଶରହତ ମୃଗ ପରି ଘରକୁ

ଫେରିଲି । ବାବାଙ୍କ ଉପରେ ବିରାଗ ଜାତ ହେଲା । ତଥାପି ଜନ୍ମ ଦାତା । ପୁଅର ଭଲ-ମନ୍ଦ ବୁଝିବା ତାଙ୍କର ହାତରେ । ଆଜି କାହା ପାଇଁ ଏ ଆତୁର ହୃଦୟ ସମୁଦ୍ର ପ୍ରାନ୍ତକୁ ଧାଇଁ ଯାଉଛି ? ଯଦି ଏ ସବୁ ପରେ ବାପା ସେଇଠି ବିବାହ କରି-ବାକୁ ମନା କରନ୍ତି ? ଏତେଣେ ବୀଣା ଆସି ମୋର ପ୍ରତୀକ୍ଷାରେ ଚାହିଁ ବସିଥିବ — ମନରେ ଶତ କଳ୍ପନା ଘେନି ମୋ'ର କ୍ଷଣ ବିଳମ୍ବକୁ ଗୋଟାଏ ଯୁଗ ମଣୁଥିବ — କ୍ଷୁବ୍ଧ ହୃଦୟରେ ଦୂର ଦିଗ୍‌ବଳୟ ଆଡ଼େ ଚାହିଁ ଚାହିଁ ଫେରିଯିବ । ଏ ସବୁ ଭାବନାରେ ମୋର ସ୍ମୃତି ଥରି ଉଠିଲା ।

ହର୍ମ୍ୟ ତଳେ ଗାଡ଼ି ଷ୍ଟାର୍ଟ ହେଲା । ବାଗାପୁନ ମାର୍ଗରେ ଚାହୁଁ ଚାହୁଁ ବାବା ଓ ସୁମ ମୋଟରରେ ଚାଲିଗଲେ । ଆତୁର ବାଧା ପାଇଲି । ବୀଣା କ'ଣ କରୁଥିବ ! ଆଶାହତ ହୋଇ ମୋତେ ଚାହିଁ ରହିଥିବ ।

ଝଟ କନା ଲେଖା ଶେଷ କରି ଚାଲିଯିବା ପାଇଁ ଭାବିଲି । କିନ୍ତୁ ଦଶ ପୃଷ୍ଠାର ଗୋଟାଏ ମସ୍ତବଡ଼ ପ୍ରବନ୍ଧ--ଘଣ୍ଟାକ ଭିତରେ ଶେଷ କରିବା ଅସମ୍ଭବ । ମନେ ହେଲା ମୋଟରରେ ଯାଇ ବୀଣାକୁ ଏ କଥା କହି ଆସିବି । କିନ୍ତୁ ଯଦି ବାବା ଦେଖନ୍ତି ? ଅଣିଶି ବର୍ଷର ପୁଅକୁ କିଛି କହିପାରିବେ ନାହିଁ ସତ । କିନ୍ତୁ ମନରେ ଅସନ୍ତୋଷ ଜାତ କରିବାର କାରଣ ହେବ ।

ଗତ କାଲିର ପ୍ରତିଶ୍ରୁତି ପରେ ଏ ନଯିବାର ବୀଣା

କ'ଣ ଭାବବ ? କ୍ଷଣିକ ଲାଳସାରେ ମୁଁ ଉତ୍ତେଜିତ ହୋଇ ତାର ଜୀବନକୁ ନଷ୍ଟ କରିବାକୁ ଯାଉଚ ବୋଲି ଭାବବ ନାହିଁ ? ତେବେ ଆଉ ହୃଦୟ ଦେଇ କି ସେ ମତେ ଭଲ ପାଇ ପାରିବ ? ମୋର କଳ୍ପନା-ସୌଧ ଭୂମିକମ୍ପରେ ଯେପରି ହଠାତ୍ ଭୂମିସାତ୍ ହେଲା । କିନ୍ତୁ କରିବ କ'ଣ ? ନିଃସହାୟ । ନିରୁପାୟ ଭାବରେ ଲେଖିବା ପାଇଁ କଲମ ଧଇଲି । କିନ୍ତୁ—

ସାଢ଼େ ସାତ ବାଜିଲା । ଶୁଣ୍ଠରେ ମାଡ ଆସିଲା ଉଦ୍‌ବେଗର ଜୁଆର । ମିଳନର ମଧୁ ଆସ୍ୱାଦନ ବଦଳରେ ବିରହର ଏ ତିକ୍ତତା ଚାଖିବାକୁ ଥିଲା ମୋ କପାଳରେ !

ଗାଡ ଆସି ପୋର୍ଟିକୋରେ ଛିଡା ହେବାର ଶବ୍ଦ ଶୁଣିଲି । କାଳେ ବାବା ଆସି ଘଣ୍ଟାକ ଭିତରେ ମୋର ଏ ଖାତା ଧାଡ ଲେଖା ଦେଖି କଣ କହିବେ, ସେକଥା ମୋତେ ବିବ୍ରତକଲା । କଲମ ଧଇଲି । ପାଞ୍ଚଟି ଧାଡ ଲେଖିଚ ସୁମ ଡେଇଁ ଡେଇଁ ଆସି କହିଲା, ନନା— ବୀଣା ଅପା ଆଉ ଅରୁ ବ'ଚ୍ଚାରେ ଥିଲେ, ଦେଖି ଆସିଚ, ସୁନ୍ଦ-ସୁନ୍ଦ — ତମେ ଯିବା ନେଲନ ।

ବିରକ୍ତି ଓ ରାଗ ଜାତ ହେଲା । କିନ୍ତୁ ସମ୍ଭାଳି ପଚାରିଲି, ବୀଣା ଆଉ ଅରୁ ଆସିଥିଲେ ? ମାଉସୀ ?

ନା

ସେମାନେ ଚାଲିଗଲେ ?

ନା, ସେମାନେ ଯିବା ଆଗରୁ ଆମେ ଚାଲି ଆସିଲୁ ।

ବୀଣା ମୋ ପାଇଁ ଅପେକ୍ଷା କରି ରହିଛି । ମିସ୍ଟ୍ରୂ-ମାଣ ହେଲ । ସେ କଣ ଭାବୁଥିବ ? ସାଥିରେ ଅରୁ ଆସିଛି କିଆଁ ? ଆମ ଭିତରେ ଅରୁର ସମ୍ବନ୍ଧ କଣ ? କେଉଁ ମର୍ମରେ ବୀଣା ଅରୁକୁ ଆଣିଛି ? ବୁଝି ହେଲନି । ପଚାରିଲି, ଅରୁ ଆସିଥିଲି ସୁମ ।

ସେ Illustrated Weeklyର ପୃଷ୍ଠା ଲେଉଟାଉ ଲେଉଟାଉ କହିଲା, ହଁ ।

ବୀଣାର ଏ ଛଳନାରେ ବିସ୍ମିତ ହେଲି । ହୃଦୟ ଦେଇଛି ବୋଲି କିମ୍ବା ମୃଗତୃଷ୍ଣା ପଛରେ ମୋତେ କ'ଣ ଧାଉଁ-ଡୋଉଛି ?

ମୁଁ ବୀଣାକୁ ଉପେକ୍ଷା କରିବା ପାଇଁ ଲୋଡ଼ୁନି—ପ୍ରେମିକ ମାଜିବା ପାଇଁ ବାହାଦୁର କରନି । ଲୋଡୁଛି ମୋର ଜୀବନ ରଙ୍ଗରେ ତାକୁ ସଙ୍ଗିନୀ କରି ସହଧର୍ମିଣୀ କରିବା ପାଇଁ । ଅନ୍ତରର ପଦ୍ମ-କୋରକକୁ ତାର କର ପରଶରେ ଫୁଟାଇ ଦେବା ମୋର ଲକ୍ଷ । ଭିତରେ ଆନନ୍ଦ । ଏଇ କଳ୍ପନା ଅନ୍ୟାୟ କିମ୍ବା ଅଧର୍ମ ନୁହେ । ଏଇ ନ୍ୟାୟ୍ୟ ରୀତିରେ ବୀଣା ଉପରେ ମୋର ସ୍ୱତ୍ୱସତ୍ତ୍ୱ ଅଧିକାର ଅଛି—ଶାସ୍ତି ଦେବାର ବଳ ଅଛି ।

ନନା, ସିମିନ୍ଧ କ'ଣ ବସିଛ ? ହଠାତ୍ ମୋର ଉଦାସୀନତାକୁ ଲକ୍ଷ୍ୟ କରି ସୁମ କହିଲା ।

ଚମକି ପଡ଼ି କହିଲି, କିଛି ନୁହେ ସୁମ, ବାବାଙ୍କ

ଏଇ ପ୍ରବନ୍ଧଟା ଭୁ ଡାକଦେଉ — ବେଗି ବେଗି ଲେଖି ହୋଇ ଯିବ—

କଣ କହୁଚ, ବାବାଙ୍କର ପ୍ରବନ୍ଧ ମୁଁ ପଢ଼ି ପାରିବ ?

ସତ କଥା । ଆଠ ବର୍ଷର ଝୁଅ ଏ ସାହିତ୍ୟିକ ଆଲୋଚନା କମିତ ପଢ଼ିବ । ଅର୍ଥହୀନ ଅନୁରୋଧ କରିବାରେ ନିଜେ ଲଜ୍ଜିତ ହେଲ ।

ଖାଇବାକୁ ଯିବାପାଇଁ ଖବର ଆସିଲ । ସୁମକୁ ଧରି ଗ୍ଲେଲ ।

ଜଳଧର ନିରବଧି ଗର୍ଜନରେ ଶୂନ୍ୟତା ରହି ନ ପାରେ । ପ୍ରକୃତି ଯେପରି ଅସରନ୍ତ, ଅସୀମର ଚିରନ୍ତନୀ ପ୍ରତିମା, ଅଶାନ୍ତର ଶାନ୍ତି ପ୍ରଦାୟିନୀ, ନିରାଶାର ଆଶା ସ୍ୱରୂପିଣୀ, ସେଥିରେ ଜୀବନ ଶକ୍ତି ହେବା ଅଭିଶାପ ନୁହେଁ କି ? ସେଇ ଅଭିଶପ୍ତ ପ୍ରାଣ ଧରି ମୁଁ ଜନ୍ମ ପାଇନି; ଧରିତ୍ରୀକୁ ବିଷାଦ ବିଷ ଚକ୍ଷୁରେ ଦେଖିବା ପାଇଁ ମତେ ବିଶ୍ୱ-ଜୀବନ ପଠାଇ ନାହାନ୍ତି ! ସୁନ୍ଦର ଜଗତରେ ସୁନ୍ଦର ସୃଜନା କରି ହେଇ ସୁନ୍ଦର ପଥରେ ଚାଲିପିବା ପାଇଁ ତାଙ୍କର ଇଙ୍ଗିତ ।

ବୀଣା, ଏତେ ସୁନ୍ଦର ରଜନୀ, ଏତେ ସୁନ୍ଦର ପୃଥିବୀ, ଆଗରେ ଚନ୍ଦ୍ରାଲୋକିତ ସମୁଦ୍ର ଲହରୀ ଅନାଦି କାଳରୁ ଧରଣୀ ବକ୍ଷ ଉପରେ ଘନ ଘନ ଚୁମ୍ବନ ଦେଇ ଆସିଛି । ଏଇ ସୁଷମା

ସତ୍ୟ ଆଉ ନିତ୍ୟ । ତମେ ଯଦି ବାଞ୍ଛା କର ଆମର ହୃଦୟ ଚିନ୍ମୟ ଭିତରେ କିଛି ସତ୍ୟ ରଖିବା ପାଇଁ ତେବେ ସେଇ ସାଗର ପ୍ରତି ଥରେ ଚାହାଁ ! ପ୍ରଣୟର ସ୍ୱରୂପ ଶିଖିବା ପାଇଁ ଆମର ସେ ଦେବତା । ଏଇ ପ୍ରକୃତିକୁ ଯଦି ତମେ ବିଶ୍ୱାସ କର ତେବେ ଭାବିବାକୁ ପଡ଼ିବ ଆମର ପ୍ରେମ ଚିରନ୍ତନ— ଅର୍ପିମ ।

ବୀଣାର ଦୃଷ୍ଟି ସେଇଠି ଲୀନ ହୋଇ ଯାଇଥିଲା— ଯେଉଁଠିକି ଆକାଶ ଓ ସାଗର ଅକଳ୍ପନୀୟ ଯୁଗରୁ ପ୍ରଣୟୀ-ପ୍ରଣୟିନୀ ପରି ଜଡ଼ି ରହିଛନ୍ତି ।

ବୀଣା

ଉଁ

ଶୁଣିଚ

ହଁ — ପ୍ରକୃତି ସତ୍ୟ ଆଉ ନିତ୍ୟ——କିନ୍ତୁ ଅସୁନ୍ଦର ଠାରେ ସୁନ୍ଦରର ରୂପ, ବିଷ ଠାରେ ଅମୃତର ଆସ୍ୱାଦ, ବିରହ ଠାରେ ମିଳନର ହାର୍ଦ୍ଦିକତା ପୁଣି ଅଛି । ମଙ୍ଗଳ କରିବାକୁ ଗଲାବେଳେ ଅମଙ୍ଗଳର ସମ୍ଭାବନାକୁ ଚାହିଁ ଜାଗ୍ରତ ରହିବା ମନୁଷ୍ୟର କର୍ତ୍ତବ୍ୟ । ଏତିକି କହି ବୀଣା ମୋ ମୁହଁକୁ ଅବଶ ଭାବରେ ଚାହିଁ ରହିଲା ।

ମୁଁ ସବୁ କଥା ଜାଣେ, ବୀଣା । ଭଲ-ମନ୍ଦ ବିଚାର କରି ଆଜ ତମର ହାତ ଧରିବାକୁ ଯାଉଚି— ତମେ କିନ୍ତୁ

ତାହା ବୁଝି ପାରୁନା ।

ବୁଝିଲ ! ଏଇ ବର୍ଷକ ଭିତରେ ତମ ପ୍ରତି ମୋର ଯେଉଁ ଅକୁହା ସ୍ନେହ ଗୁମୁରି ଉଠି ଦୁଇ ଦିନ ତଳେ ଆମର ଏକୁଟିଆ ଦେଖାରେ ରୂପରେଖ ନେଇଚି, ସେଥିରେ ମୋର ଅନ୍ତର ଥରି ଉଠିଥିଲା । ଆଉ ଗତ କାଲିର ଏ ଉପେକ୍ଷା ପାଇ ବି ଅନ୍ତର ଥରି ଉଠେଚି । କିନ୍ତୁ ସେଥିର ପ୍ରଭେଦ ତୁମେ ବୁଝି ପାରିବନି ।

ବୀଣାର କଥା ମୋ ଚିତ୍ତରେ ଆନ୍ଦୋଳନ ସୃଷ୍ଟି କରି-ଦେଲା । ଗୋଟିଏ ବାବାଙ୍କର ଆଦେଶ, ଏଣେ ପ୍ରେମ-ପ୍ରତିମା ଠାରେ ପ୍ରତିଶ୍ରୁତି ରକ୍ଷା । ଆସିବା ପାଇଁ ଅନୁନୟ କରି ବୀଣା ମୋର ପ୍ରଥମ ଥର ପାଦ ଛୁଇଁ ପ୍ରଣାମ ଜଣାଇଥିଲା । ଚାଲି ବେଳକୁ ତାର ଚକ୍ଷୁ ଛଳ ଛଳ ହୋଇ ଆସିଥିଲା । କିନ୍ତୁ ମୁଁ ଆସି ପାରି ନଥିଲି ।

ମାନବକୁ ପରୀକ୍ଷା କରିବା ପାଇଁ ସ୍ରଷ୍ଟାର ଏକି ଖେଳ ? ଜୀବନ-ପଥରେ ଏପରି ପ୍ରତିଘାତ ଆସେ କାହିଁକି ? ହାତ ଧରି କହିଲି, ବୀଣା, ମୁଁ ଯେଉଁ ଏକ କ୍ଷୁଦ୍ର ସମାଧାନ ଦେବାପାଇଁ ଯାଉଚି ସେଥିରେ ତମର ବିଶ୍ୱାସ ହେବନି ମୁଁ ଜାଣେ; ତମେ ମତେ ସେଥିପାଇଁ କ୍ଷମା ଦେଇ ପାରିବ ନାହିଁ ।

ବୀଣା ମୋ ତୁଣ୍ଡକୁ ଚୁପି ଧରି କହିଲା, ନା, କ୍ଷମା କରନ୍ତୁ, ଆପଣଙ୍କ ଠାରୁ ମୁଁ ସମାଧାନ ପାଇବାକୁ ଚାହୁଁନି ।

ହାତ ଛଡ଼ାଇ କହିଲି, ନା, ବୀଣା, ଟିକିଏ ଶୁଣ ।

ନା, ମୋ ରାଣୀ ଅଛୁ ।

କି

ମୁଁ କାରଣ ଖୋଜୁନି ।

କି

ନା—

କାହିଁକି ?

ନା —

କହିବାକୁ ପଡ଼ିବ ।

ବିଶ୍ୱାସ ପାଖରେ ମୁଁ କାରଣ ଖୋଜୁନି ?

ସତ କହୁଚ, ବୀଣା, ସତରେ କ'ଣ ତମେ ମତେ ଭଲ ପାଅ ?

ବୀଣା କିଛି ନ କହି ମୋର ବାଁ ହାତ ସହିତ ଖେଳିବାକୁ ଲାଗିଲା ।

ଡ଼ିଆଲ୍‌ଟିଅର ସମୁଦ୍ର-ତୀରରେ ଆମେ ଦୁହେଁ ଭାବ ବିଭୋର ହୋଇ ଏପରି କଥାବାର୍ତ୍ତା କରୁଥିଲୁ । ପୂର୍ବ ଅଭିମୁଖୀ ଭିକ୍‌ଟୋରିଆ ଜାହାଜ ଯାତ୍ରାରମ୍ଭ କରି କ୍ଷିପ୍ର ଗତିରେ ଚାଲିଚି । ତଥାପି ଏ ପ୍ରଶାନ୍ତ ସାଗରରେ ତାର ଗତି ମନ୍ଥର ପରି ମନେ ହେଲା । ବିଶ୍ୱବିଦ୍ୟାଳୟସ୍ଥ ଆଡୁ ଉଜ୍ଜ୍ୱଳ ଆଲୋକ ଝପାନ୍ତ କରି

କାହାର ଗୋଟିଏ ମୋଟରର ଗାଡ଼ି ଚାଲିଗଲା ହାସପିଟାଲ ରୋଡ଼ ଉପରେ ।

ସମ୍ମୁଖରେ ସାଗରର ବିସ୍ତୃତ ନୀଳ ଜଳରାଶି ଶାନ୍ତ ଶୋଇ ଆସୁଥାଏ । କ୍ରମେ ଆକାଶର ଅର୍ଦ୍ଧ ଭାଗକୁ ରଞ୍ଜିତ କରି ଚନ୍ଦ୍ର ହସି ଉଠିଲା । ବିଶାଳ ସୈକତ ଜ୍ୟୋତ୍ସ୍ନାର ସ୍ପର୍ଶରେ କମନୀୟ ଦେଖାଗଲା ।

ମୃଦୁ ସମୀରଣରେ ବୀଣାର ସ୍ନିଗ୍ଧ ଲଲାଟ ବେଷ୍ଟିତ କୁଞ୍ଚିତ କେଶ ଦୋହଲି ଯାଉଥିଲା ।

ବୀଣା ମୋର ରୁମାଲ୍‌ଟିକୁ ଧରି ଖେଳୁଥିଲା । ହଠାତ୍ ଚମକିଲା ପରି ଠିଆ ହୋଇ କହିଲା, ଯିବା ।

ତାର ମୁଖ ମଣ୍ଡଳକୁ ଦୁଇ ହାତରେ ଧରି କହିଲି, ଯିବ ?

ଲଜ୍ଜାରେ ସେ ମଥା ନୁଆଁଇ ଆଣିଲା— କହିଲା, ହଁ

ମୋଠୁଁ ବିଦାୟ ନେଇ ଅଳ୍ପ ଦୂର ଯାଇଛି କହିଲି, ମୋର ରୁମାଲ୍‌ଟା ?

ମୁହଁ ବୁଲାଇ ଚିନ୍ତିତ କଣ୍ଠରେ କହିଲା, ନା, ଥାଉ—

ତାରୁଣ୍ୟ ଉଦ୍ଭାସିତ ସ୍ୱର୍ଣ୍ଣ-ତରଣୀରେ ବସି ଆନନ୍ଦ ଉଦ୍ବେଳିତ ସମୁଦ୍ରରେ ଆମେ ଦୁଇ ପ୍ରାଣୀ ଯାତ୍ରାରମ୍ଭ କଲୁ । ଆଗରେ ସୁନ୍ଦର ନୀଳାମ୍ବୁ, ଉପରେ ଶାନ୍ତ ଆକାଶ, ପଛରେ ସୁଜଳା ସୁଫଳା ଭୂମି । ଆମର ଚତୁର୍ଦ୍ଦିଗରେ ପ୍ରକୃତିର ବିଳସିତ ଶୋଭା ବେଷ୍ଟନୀ ପରି ରହି ଯେପରି ଆମର ପ୍ରଣୟକୁ ରୂପାୟିତ କରୁଥିଲା । ଏଇ ଅପୂର୍ବ ସହାନୁଭୂତି ଭିତରେ ମନେ ହେଲା ଆମେ ଦୁହେଁ କୁସୁମିତ ବନାନୀର ଦୁଇଟି ପ୍ରେମରତ କପୋତ କପୋତୀ – ଜଣେ ବିପଞ୍ଚି, ଆଉ ଜଣେ ଲଳିତ ଝଙ୍କାର; ଜଣେ ପରାଗ, ଆଉ ଜଣେ ସୁଧା; ଜଣେ ଉନ୍ମିଳିତ ପଦ୍ମ, ଆଉ ଜଣେ ନୃତ୍ୟରତ ଅଳି । ପ୍ରେମର ଏଇ ଅଳି-ଦଳି, ସମ୍ଭୋଗ-ଅଭିମାନ, ରାଗ-ଅନୁରାଗ ଭିତରେ ଆମେ ଖେଳିଲୁ ଅନାବିଳ

ହୃଦୟର ନବଭ ସ୍ପର୍ଶ । ଦୁନିଆରେ ଯାହାକିଛି ମଳିନ, ନଗ୍ନେଜ, ଅସୁନ୍ଦର ସବୁ ଆମ ଚକ୍ଷୁରେ ତେଜସ୍ବର ଦଶିଲ୍ । ସାବଲୀଳ ପ୍ରୀତିର ପ୍ରସ୍ରବଣ ଫିଟି ପଡ଼ିଲ୍ । ଅନ୍ତର ପ୍ରଦେଶରୁ ପ୍ରତିଭା ଉନ୍ମେଷିତ ହେଲ୍ । ପ୍ରଣୟର ସନ୍ଧାନରେ ପ୍ରତିଭା ଗାଇଲା କାବ୍ୟ-ଗୀତି ।

କବିତା ଲେଖା, ଗଳ୍ପ ରଚନାରେ ଅହର୍ନିଶ ମୋର ମନ ଅନୁପ୍ରାଣିତ ହୋଇ ଉଠିଲ୍ । ସାହିତ୍ୟର ସ୍ବରୁ ଗୁଞ୍ଜରଣରେ ଫୁଟି ଉଠିଲ ବୀଣାର ଆଳାପନା ।

ହଠାତ୍ ଦିନେ ବାବାଙ୍କର ଆଦେଶ ହେଲ୍ ମାନ୍ଦ୍ରାଜ ପ୍ରେସିଡେନ୍‌ସି କଲେଜରେ ପଢ଼ିବା ପାଇଁ । ମାନ୍ଦ୍ରାଜ ! ମେଘ ଶୂନ୍ୟ ଆକାଶରୁ ମସ୍ତକ ଉପରେ ପଡ଼ିଲ୍ ଯେପରି କଠୋର କୁଳଶ ! ବିନୀତ ଭାବରେ କହିଲି, ଏଇଠି ପଢ଼ିଲେ ହେବନି

ନା, ଏଇଠି ପଢ଼ିବାକୁ ହେବନି

କାହିଁକି ଏଇଠି ପଢ଼ିବାକୁ ହେବନି, ଏକଥା ପଚାରିବା ପାଇଁ ମନ ଡାକିଲ୍ । ଜନ୍ମଦାତା ! କାରଣ ପଚାରିବାର ମୋର ଅଧିକାର ନାହିଁ । ମୁ ଜାଣିଲି ତଥାପି କହିଲି, ଏ ବର୍ଷ ବିଂଏଂ ପରୀକ୍ଷାଟା ପାସ୍ କରିବ; ମୋର ଆଖି ଅଶ୍ରୁ ଛଳ ଛଳ ହୋଇ ଆସିଲ୍ ।

ଉତ୍ତର ମିଳିଲ୍, ନା ଏଇଠି ହବନି, ମାନ୍ଦ୍ରାଜ ଯିବାକୁ ପଡ଼ିବ ।

— ବନ୍ୟାର ଦୁଇଟି ଫୁଲ —

କିନ୍ତୁ କହିଲିନି, କହି ପାରିଲିନି, କହିବା ପାଇଁ ଅଧିକାର ନାହିଁ । ମୋର ସ୍ୱତନ୍ତ୍ର କକ୍ଷକୁ ଫେରିଲି । ଦୁଃଖ ମାଳାକୁ ବରଣ କରିବା ପାଇଁ ବ୍ୟଥାତୁର ଇଙ୍ଗିତକୁ ଗ୍ରହଣ କଲି । ଗତ୍ୟନ୍ତର ନାହିଁ । ବୀଣାକୁ ଛାଡ଼ିବାକୁ ପଡ଼ିବ । ତାହାର ହସ୍ତାପରେ ବିଷ ଅଜାଡ଼ିବା ପାଇଁ ପଡ଼ିବ । ଚଉଦ ବରଷର କୋମଳ ପ୍ରାଣକୁ ଅର୍ପି ଅନ୍ତରକୁ ବଢ଼ାଇ ଦେଇଥିଲା— ସେଇ କିଶୋରୀ ତାର କୋମଳ ତନୁ, ଦୁର୍ବଳ ମନ ଘେନି ଏ ବେଦନାର ଭାର କିପରି ସମ୍ଭାଳିବ । ଭାବିନାହିଁ, ଭାବିବା ପାଇଁ ମୋ ଚିତ୍ତ ସହି ପାରୁନାହିଁ । ସହିବା ପାଇଁ ମୋର ଜୀବନ ଶେଷ ହୋଇ ନାହିଁ । କିନ୍ତୁ ଭାବି ପାରିଲି ନାହିଁ । ମୀମାଂସା କରି ପାରିଲି ନାହିଁ ।

ଘଡ଼ିରେ ବାଜିଲା ଛଅ । ସନ୍ଧ୍ୟା ମୋ'ର ଗୁହାରି ଶୁଣିବା ପାଇଁ ଆଉ ନଥିଲା । କ୍ଷୀଣାଲୋକର ଦୁନିଆ ଭିତରେ ପ୍ରାଣ ଅନ୍ତର ଦୁର୍ବିସହ ହୋଇ ଉଠିଲା ।

ଅରୁ, ସୁମ ଆଉ ବୀଣା ତିନିହେଁ ମୋର କୋଠରୀରେ ପ୍ରବେଶ କଲେ । ଚମକି ପଡ଼ିଲି । ଲକ୍ଷ୍ୟ କଲି ହଠାତ୍ ବୀଣା ଯେପରି ଜଡ଼ ପାଲଟି ଯାଇଛି । ଡାକିଲି, ବୀଣା

ବୀଣା ଧୀରେ ଆସି ଶେଯରେ ବସିଲା ।

ସୁମ ମୋର ହାତକୁ ଥରେ ଝିଙ୍କି ଦେଇ କହିଲା, କ'ଣ ନନା ସିମିତି ବସିଚ ?

କିନ୍ତୁ ନୁହେ ସୁମ ଏତିକି କହି ଶେଯରେ ଢ଼ଳି ପଡ଼ିଲି ।

ସୁମ କିଛି ନକହି ଅରୁଣର ହାତ ଧରି ଚାଲ ମହଲାକୁ ଟାଣି ନେଇଗଲା ।

ନୀରବତା ଭିତରେ କ୍ଷଣକାଳ ବିତିଗଲା । ବୀଣା ପଦେ କଥା କହି ପାରିଲା ନାହିଁ । ସେ ଚାହିଁ ରହିଥିଲା ମୋର ପାଦକୁ ଆଉ ମୁଁ ଚାହିଁ ରହିଥିଲି ତାର ମଉଳା ମୁଖ-ପଦ୍ମକୁ ।

ପଚାରିଲା, କ'ଣ ହେଲି ?

ଉତ୍ତରରୁ ବାକ୍ୟ ଫୁଟିଲା ନାହିଁ ।

ମୋର ଗୋଡକୁ ଥରେ ଝାଙ୍କି ସେ କହିଲା, କଥା କହିବନି ?

ନା, ବୀଣା, ବାବାଙ୍କର ଆଦେଶ ମୁଁ ମାନ୍ଦ୍ରାଜରେ ପଢ଼ିବାକୁ ହେବ ।

କି ?

ଜାଣେନି କାହିଁକି ।

ବୀଣାର ମୁହଁକୁ ଚାହିଁ ବୋଧ କଲି ସତେକି ତାର ମୁଣ୍ଡରେ ବଜ୍ର ଖଣ୍ଡ ପଡିଚି । ତାର ଗଣ୍ଡ ଦେଶକୁ ପ୍ଲାବିତ କରି ମୋର ପାଦ ଉପରେ ଝରି ପଡିଲା ଉଷ୍ଣ ଲୋତକ । ପାଖକୁ ଟାଣି ଆଣି କହିଲି, ବୀଣା, ଦୁଃଖ କରନା, ବାବାଙ୍କର ଆଦେଶ ମୁଁ ମାନିବାକୁ ପଡିବ; ଦୀର୍ଘ ବିଚ୍ଛେଦ ପରେ ଆମର ମିଳନ ଅତି ମଧୁର ହୋଇ ଉଠିବ । ତାର ଗଣ୍ଡକୁ ଥରେ ମୋର

ବସ୍ତ୍ରାଞ୍ଚଳରେ ପୋଛି ଦେଲି ।

ବୀଣା କିଛି କହି ପାରିଲା ନାହିଁ । ବୋଧହୁଏ କହିବା ପାଇଁ ଭାଷା ଥିଲେବି ଭାବ ଅବରୁଦ୍ଧ ହୋଇ ଯାଇଥିଲା ।

ବୀଣା—ତଳ ପୁରରୁ ଲକ୍ଷ୍ମୀ ଦେବୀଙ୍କ ଡାକ ଶୁଭିଲା ।

ବୀଣା ବ୍ୟସ୍ତବ୍ୟସ୍ତ କଣ୍ଠରେ କହିଲା, ମା ଡାକୁଚି

ଯିବୁ ?

ନିରୁତ୍ତର

ପୁଣି ଶୁଭିଲା, ବୀଣା

କହିଲି, ହଉ, ଯା'

ଅଶ୍ରୁ ଛଳ ଛଳ ନୟନରେ ବୀଣା ମୋ ଆଡେ ଚାହିଁ କହିଲା, ଯିବି ?

ପୁଣି ଶୁଭିଲା, ବୀଣା

ବୀଣା ଅଧା ବାଟ ଯାଇ ପୁଣି ମୋ ଆଡେ ଅନାଇ କହିଲା ଯିବି—

ହଁ, ଯା' ବୀଣା, ବଡ ଘରେ ଜନ୍ମ ପାଇ ଆମେ ପାପୀ ହୋଇଚୁ, ଯା' ।

ବୀଣା ସେଇଠି ଟିକଏ ଛିଡା ହୋଇ ପୁଣି ମୋ ଆଡେ ଚାହିଁ ଚାଲିଗଲା ।

ସେଇ ହେଲା ବୀଣାଠାରୁ ମୋର ବିଦାୟ । ପୃଥକ

ଘରଟରେ ଆଉ ବନ୍ଧାୟୁ ନେବା ପାଇଁ ସମୟ ନଥିଲା । ସେ ଭାବିଥିଲା ମୁଁ ଯିବା ଆଗରୁ ପୁଣି ସାକ୍ଷାତ ହେବ ବୋଲି । ତଥାପି ଆର ଦିନ ଡାକ ଗାଡିରେ ମୁଁ ବିଶାଖପାଟଣା ଛାଡ଼ିବାକୁ ପଡ଼ିଲା ।

ମାନ୍ଦ୍ରାଜରେ ପହଞ୍ଚି ହୋଷ୍ଟେଲ୍ ଜୀବନ କଟାଇବାକୁ ଲାଗିଲି । କଲେଜରେ ପଢ଼େ, ତଥାପି ମୋର ସ୍ପୃହା ନଥିବା ପଢ଼ା ସେ । ଲାଭ କ'ଣ ? ବରଷ-କବଳା ପଢ଼ିବା ଛଡ଼ା ପାଠ୍ୟ ବହି କ୍ୱଚିତ୍ ଦେଖେ କେବଳ ବାବାଙ୍କ ଭୟରେ । ଦିନ ଟିଏ ଯୁଗଟିଏ ପରି ଲାଗୁଥିଲା । ବୀଣାର ସାକ୍ଷାତ ପାଇ ପାରିଲି ନାହିଁ । ପାଇବ କପରି ? ଚିଠି ଦେବା ପାଇଁ ଛାତି ଉପରେ ଥରି ଉଠୁଥାଏ । ବଡ଼ଘରର କାରବାର । ଯଦିଚ ଗିରି-ଧରବାବୁଙ୍କ ହାତରେ ପଡ଼େ, ତେବେ ବୀଣାର ଗତି ହେବ କ'ଣ ? ବୀଣା ଯେ ମୋର ପ୍ରଣୟକୁ କପରି ଅନୁଭବ କରୁଥିବ, ତାହା ମୁଁ ଜାଣେ; ତାହା ମୁଁ ଜାଣିବା ପାଇଁ ସେ ମତେ ଶିଖାଇ ଦେଇଚି । ସୁମତୀକୁ ମୁଁ ଚିଠି ଦିଏ । ବୀଣାର ସୁଖ-ଦୁଃଖ ପଚ୍ଛରେ ଅତି ଅପ୍ରତ୍ୟୋଶିତ ଭାବରେ । ତଥାପି ଲେଖିପାରେ ନାହିଁ ଯେ ତାର ଲଫାଫା ଭିତରେ ବୀଣାକୁ ଚିଠି ଦେବା ପାଇଁ କହିବାକୁ । ବୀଣା ବା ପତ୍ର ଦେବା ପାଇଁ ଠିକଣା ପାଇବ କେଉଁଠୁ ? କିଏ ତାକୁ ଅଯାଚିତ ଭାବରେ ଠିକଣା ଦେବ ? ତାର ହୃଦୟ କିଏ ଜାଣିବ ? ସେ ବା ଭୁଣ୍ଡି ଫିଟାଇ ମୋର ଠିକଣା ମାଗିବ କପରି ?

ଏଇଠି ସେଇ ଶାଳ ରତ୍ନାକର ଗୁରୁ ତର୍କ୍ଜନ କରି

ଝୁଲିଛି; ସେଇ ଯାମିନୀ ତାରକା-ପୁଷ୍ପକୁ ବକ୍ଷୁରିତ କରି ବୁଲୁଛି; ସେଇ ଚିକ୍କଣ ସୈକତରେ ଚନ୍ଦ୍ରିକା କ୍ରୀଡ଼ା ରଚିଛି; ଆଗରେ ସେଇ ସମୁଦ୍ର, ଉପରେ ସେଇ ଆକାଶ, ଘୂରି ଦିଗନ୍ତରେ ହେଇ ଧରଣୀ । ତଥାପି ମୋର କେହି ନୁହନ୍ତି । ନିଖିଳ ବିଶ୍ୱ, ମୋର ଯେପରି ପର । ଅଟ୍ଟହାସ କରି ମୋର ଏ ନିଃସଙ୍ଗ ମନକୁ ମ୍ରିୟମାଣ କରିବାରେ ଯେପରି ଆନନ୍ଦ ଲାଭ କରୁଛନ୍ତି ।

କୁମାରପ୍ପା ଆସି ଡାକିଲା, ଆସ ଥରେ ବୀଚ୍ ଆଡେ ବୁଲି ଆସିବା –

ମୋର ତନ୍ମୟତା ଭାଙ୍ଗିଗଲା । କହିଲି, ଚାଲିକି ଯିବା

ଛାତ୍ର ମହଲରେ କୁମାରପ୍ପା ମୋର ଘନିଷ୍ଠ ମିତ୍ର । ସେ ମହୀଶୂରରୁ ଆସିଛି—ଭଲ ବେହେଲା ବଜାଇ ଜାଣେ । ମୁଁ ତା'ଠୁଁ ଶିଖୁଥାଏ ବେହେଲା । ସ୍ନେହ ବନ୍ଧନରେ ମୋ ହାତ ଧରି କହିଲା, ଆସ ଥରେ ବୁଲି ଆସିବା; ସବୁବେଳେ କଣ ଗୋଟାଏ କବିତା ଲେଖାରେ ମୂକ ପରି ବସି ଦିନ କାଟୁଛ ।

ମାନିବାକୁ ପଡ଼ିଲା । କହିଲି, ଚାଲ

ସେ ମୋର ବେଶ-ପ୍ରସାଧନ ପ୍ରତି ଚାହିଁ ହସିଲା, କହିଲା, କ'ଣ ଗୋଟାଏ ପାଗଳଙ୍କ ପରି ବାହାରୁଛ; ବଡ ଘର ପିଲାର ଏ ବେଶ ଦେଖିଲେ ଲୋକେ କ'ଣ ଭାବିବେ ?

ମୁଁ କଥାକୁ ଉଡାଇ ଦେଇ କହିଲି, ଚାଲ୍ ଚାଲ୍; ଆମକୁ ଦେଖିବା ଲୋକ ଏଇଠି କେହି ନାହାନ୍ତି –

୦

ଭଗ୍ନ ହୃଦୟକୁ ଶାନ୍ତି ଚମ୍ପୁରେ ବନ୍ଧନ କରି ବୀଣାର ଚାଲି ଚଳଣି ବଦଳି ଯାଇଛି ।

ଆମ ଘରକୁ ଆଜି ସେ ପୂର୍ବ ପରି ବାରମ୍ବାର ଆସୁନାହିଁ । କେବେ କେମିତି ଅହେତୁକ ଭାବରେ ଲୋକ ଲୋଚନକୁ ଦେଖାଇ ଦେବା ପାଇଁ ଆସେ । ଆସେ, ନୀରବ ଭାବରେ ବସେ, ଦେଖେ ଯାହା କିଛି, ପୁଣି ନୀରବ ଭାବରେ ତଳକୁ ଚାହିଁ ଚାହିଁ ଚାଲିଯାଏ । ମୁହଁରେ ହସ ନଥାଏ, ଆଖିରେ ଜ୍ୟୋତି ନଥାଏ, ଦେହରେ କମ୍ପନ ନଥାଏ । ବୀଣାର ଏଇ ଢରଦକୁ ବୁଝି ନପାରି ସୁମ ମୋ ପାଖକୁ ଲେଖିଥିଲା, ବୀଣା ଅପା କେବେ କେବେ ଆମ ଘରକୁ ଆସନ୍ତି, କିନ୍ତୁ ଆଜି ମୋ ସହିତ ହସ ଖେଳ କରୁ ନାହାନ୍ତି । ମତେ ଦେଖି କହନ୍ତି ନନା ପାଖକୁ

ଚିଠି ଲେଖିଲେ ମୋ ନାରେ ପଦେ ଲେଖି ଦେଇ ଥିବୁ । ଏତିକରେ ମୋ ସହିତ ତାଙ୍କର କଥା ଶେଷ । ମୁଁ କଣ ଦୋଷ କଲିଯେ ମୋ ସାଥିରେ କଥା ହେଉ ନାହାଁନ୍ତି ନନା ?

ଭଉଣୀ ଠାରୁ ସ୍ନେହ ଭରା ପତ୍ର । ବୀଣାର ମନୋବୃତ୍ତିକୁ ନିଜ ରୀତିରେ ବୁଝି ସୁମ ଲେଖେ ମୋ ପାଖକୁ ଚିଠି —ଦୁଇ ମାସ ତଳେ ବୀଣା ଥରେ ଆମ ଘରକୁ ଆସି ମୋର ସେଇ ପରିତ୍ୟକ୍ତ ସ୍ୱତନ୍ତ୍ର ପ୍ରକୋଷ୍ଠ ଭିତରେ ଗୋଡ ପକାଇ ଥିଲା । ଟେବୁଲ୍ ଉପରେ ଥିବା ଆର୍କୋ ଫ୍ରେମ ଭିତର ଫୋଟୋଟିକ୍ ବାହାର କରି ନେଇ ଯାଇଥିଲା । ତାର ଏ ଚୌର୍ଯ୍ୟ ବୃତ୍ତି ଦେଖି ସୁମ ହସିଲା । ସେ ମିନତିଭରା କଣ୍ଠରେ କହିଥିଲା, କହିବୁନି, ସୁମ —

ସେଦିନ ଶୁଭ୍ର ଅପରାହ୍ନ । ଶୁଭ୍ରମନ୍ୟୁ ଆପ୍ଟାରଙ୍କ କବିତା କ୍ଲାସ । ଅକ୍ସଫୋର୍ଡ୍ ବିଶ୍ୱବିଦ୍ୟାଳୟର ପ୍ରାଚୀନ ଡକ୍ଟର୍ ଉପାଧି-ଧାରୀ—ଶାନ୍ତଶୀଳ ଭକ୍ତିଭାଜନ ଅଧ୍ୟାପକ । ଆଉ ଏ ସାଧୁ ସ୍ୱଭାବ ଗୁରୁଙ୍କ ଆଖିରେ ଧୂଳି ମାରି ଶିଷ୍ୟମାନେ କ୍ଲାସରୁ ଖସି ପଳାନ୍ତି । ଏ ଭଳି କେତେ ଛାତ୍ରଙ୍କୁ ଦେଖି ଦେଖି ସେ ବୁଢ଼ା ପାଲଟି ଗଲେଣି ।

ମୁଁ ସେତେବେଳେ ଯେଉଁ ଭଳି Il'penseroso ପାଲଟି ଯାଇଥିଲି, ସେଥିରେ ତାଙ୍କର ସେଇ କବିତା ବିଶ୍ଳେଷଣ ଶୁଣିବା ପାଇଁ ମୋର ମନସ୍କତା ନଥିଲା । ହୋଷ୍ଟେଲ୍‌କୁ ଫେରୁଚି,

ପୋଷ୍ଟ ପିଅନ୍ ମୋ ହାତରେ ଗୋଟାଏ କଭର ବଢ଼ାଇଦେଲା ।
ମୁଁ ଆସୁଥିଲି କ୍ରିକେଟ୍ ପଡ଼ିଆ ବାଟରେ । କା'ର ଏ ହସ୍ତାକ୍ଷର
ବୁଝି ପାରିଲି ନାହିଁ । ସୁନ୍ଦର ତ ବୁଝେ । ଅପ୍ରତ୍ୟାଶିତ ଭାବରେ
ଚିଠି ଦେଖିଲି ଉପରେ ସମ୍ବୋଧନର ପ୍ରଥମ ସ୍ଥାନଟି ଶୂନ୍ୟ
ପଡ଼ିଛି । କିପରି ସୃଷ୍ଟି କ୍ଲେଉଥାଇ ଦେଖେ ତଳେ ଲେଖାଅଛି
'ତମର ଭଙ୍ଗାବୀଣା' । କିଏ ଏ କୋମଳ କର ଅଙ୍କିତ ପ୍ରଣୟ
ପତ୍ର ଏ ! ବିଶ୍ୱାସ କରି ହେଉନି । ସେ ମୋର ଠିକଣା ପାଇଲା
କିପରି ? ତାକୁ ଦେଲା କିଏ ?

ପ୍ରଣାମ,

ତମେ ଏଠୁ ଯାଇ ଆଜକୁ ପ୍ରାୟ ସାତ ଆଠ
ମାସ ହେଲାଣି । ଅଥଚ ଆସିନି କି ଚିଠି ଖଣ୍ଡେ ବି ଦେଇନ ।
ସ୍ନେହ ପାଇଁ ସିନା ପ୍ରତିଶ୍ରୁତି ଦେଇଥିଲି ଚିଠି ଦେବ ବୋଲି ତ
ଆଉ କେବେ ମୋ ହାତରେ ହାତ ପକାଇ ପ୍ରମାଣ କରିନାହଁ ।
ତମେ ମତେ ସତରେ ଭଲ ପାଇଛ କି ଛଳନା ଦେଖାଇଛ
ସେକଥା ସବୁ ମୁଁ ଭାବୁନି । ମୁଁ ହୃଦୟରୁ ଦେଇ ଭଲ ପାଇଛି !
ଏଇ ତୃପ୍ତି ମୋର ଯଥେଷ୍ଟ । ମୋର ସ୍ନେହକୁ ଯେଉଁ ଭାବରେ
ତମେ ନେଇ ଖେଳ ଖେଳୁଛ ତାହା ଛଡ଼ାଇ ଆଣିବାର ଶକ୍ତି ମୋ
ପାଖରେ ଆଉ ନାହିଁ । ସୁଖରେ ସାହାଯ୍ୟ ହେବାପାଇଁ ସିନା ମତେ
ଖୋଜିଥିଲ ଦୁଃଖରେ କଣ ସମଭାଗୀ ହେବାକୁ ଲାଜିଛ ।
ସ୍ନେହର ସ୍ୱରୂପକୁ ଦେଖାଇବା ପାଇଁ କଥା ପଡ଼ିଲେ ମତେ

ସହଧର୍ମିଣୀର ଅର୍ଥ ବୁଝାଉଥିଲ । ତାର ଅର୍ଥ ବୁଝିଚି । ମୁଁ ନାରୀ, ଅବଳା, ଅବିବାହିତା । ମୋର ସାହାକଣ୍ଠ ମାନମର୍ଯ୍ୟାଦାକୁ ଦାଣ୍ଡରେ ଫକାଇ ଦେଇ ଦେବ । କିନ୍ତୁ ତମେ ପୁରୁଷ ହୋଇ ଦେବନି । ତମର ଠିକଣାଟା ମୁଁ କେଉଁ ଭାବରେ ପାଇଚି ତାହା ତମେ ବୁଝି ପାରିବତ । ଭୀରୁର ଭୟକୁ ଘୃଣା, କୁଳ-ଶୀଳାର ଲଜ୍ଜାକୁ ଏଡ଼ ସୁମଠାରୁ ମୁଁ ମାଗିଚି । କହିବ ସୁମତ ଆପଣା ଘରର ପିଲାଟା, ତା ପାଖରେ ଏ ଲଜ୍ଜା ଭୟ କାହିଁକି ? କିନ୍ତୁ ମୁଁ ପୁରୁଷ ନୁହେଁ, ସ୍ତ୍ରୀ । ମୁଁ ସ୍ତ୍ରୀ କି ପୁରୁଷ ତମେ ଜାଣି-ନାହିଁ । ଭାବିଚ ଜଣେ ମାଟିର ପିତୁଳା ।

* * * *

ତମେ ଶୁଣି ଖୁସି ହେବକି ନା ମୁଁ ଜାଣିନି । ତଥାପି ଲେଖୁଚି ମୁଁ ଆଉ ବାବା ମାନ୍ଦ୍ରାଜ ଯାଉଚୁ । ଅଲ ଇଣ୍ଡିଆ ରେଡ଼ିଓରେ ବୀଣାରେ ଗାଇବାକୁ ମତେ ଡାକରା ଆସିଚି । ରେଡ଼ିଓ ଲୋକେ ତାଙ୍କ କେମ୍ପରେ ଗତ ମାସ ତଳେ ଆସି ମୋର ଗୀତ ଶୁଣି ଯାଇଥିଲେ । ୧୮ । ୮ । ୪୨ ରେ ମୋର ପ୍ରୋଗ୍ରାମ୍ ଅଛି । ଆମେ ତେରହଳ ତାରିଖ ମେଲ୍‌ରେ ବାହାରି ସହରରେ ପହଞ୍ଚୁ । ଯଦି ଯୋଗ ଥିବ ଦେଖିବ । ପ୍ରଣାମ ।

ଦୋଷ ଥିଲେ କ୍ଷମା କରିବ ।

ଇତି

ତମର

ଭଙ୍ଗା ବୀଣା ।

ବୀଣାର ସ୍ନେହାଙ୍କିତ ଲିପି ପାଇ ହୃଦୟ ଅସୀମ ଆନନ୍ଦରେ ଉଚ୍ଛୁଳ ପଡ଼ିଲା । ତାର ନିଷ୍ଠୁର ବାଣୀ ମଧ୍ୟ ସନ୍ତୋଷ ଦେଲା । ସେତ ଆଜ ନିଷ୍ଠୁରତା ନୁହେ, ଅଭିମାନ । ପ୍ରଣୟର ଆବେଗରେ, ଅନ୍ତରର ଉଚ୍ଛ୍ୱାସରେ ସେ ମତେ ଗାଳି ଦେଇଛି । ସେଥିରେ ତାର ଅଣୁମାତ୍ର ଦୋଷ ନାହିଁ । ପ୍ରଣୟିନୀ ଠାରୁ ଗାଳି ଶୁଣିବା ଅପମାନର ବିଷୟ ନୁହେ । ସେ ଯାହା ଲେଖିଛି ଅକ୍ଷରେ ଅକ୍ଷରେ ସତ୍ୟ । ନାରୀର ମହତ୍ତ୍ୱ ଆଦର୍ଶ, କୁଳ ସମ୍ମାନ ମୁଁ ବୁଝି-ପାରି ନଥିଲି । କିନ୍ତୁ—ଯଦି ମୋର ପତ୍ର ଖଣ୍ଡିକ ଗିରିଧରବାବୁଙ୍କ ହାତରେ ପଡ଼େ ? ନା, ବୀଣା ବୁଝି ପାରିନି, ସେ ମତେ ଭୁଲ ବୁଝିଛି । ସେ ମୋର ସ୍ନେହକୁ କ୍ରମେ ଦୂରେଇ ନେବାକୁ ଏ ସେତୁବନ୍ଧ ବାନ୍ଧୁଛି ।

ନା, ବିଶ୍ୱାସ କରି ପାରିଲି ନାହିଁ ଯେ ବୀଣା ମତେ ପ୍ରତ୍ୟାଖ୍ୟାନ କରିବାର ଉପାୟ ଗଢ଼ି ଏ ଭଳି ଚିଠି ଦେଇଛି ।

ପ୍ରକୋଷ୍ଠ ଭିତରେ ବସି ଅନେକ ବେଳ ବିତି ଗଲାଣି । ଅଥଚ ଜାଣି ପାରିନାହିଁ ମୁଁ ଘର ଭିତରେ । ଲୋକ ହସା କଥା । ତଥାପି ଲୋକ ହସାକୁ ମୁଁ ଡରେନାହିଁ ।

ମନ ଉଦ୍‌ବିଗ୍ନ ହୋଇ ଉଠିଥିଲା । ହୃଦୟ ଭାବନାର ଉତ୍ତାଳ ତରଙ୍ଗରେ ବିକ୍ଷୋଭିତ ହୋଇ ପଡ଼ୁଥିଲା । ଝରକା ବାଟେ ଧୀରେ ବହିଆସିଲା ମଳୟ ସମୀର—ମୋର ତପ୍ତ ଗଣ୍ଡକୁ ସ୍ପର୍ଶ-କରି ହୃଦୟରେ ଆଣିଦେଲା ସ୍ନିଗ୍ଧ ଶୀତଳତା । ସେଥିରେ ଆଶ୍ୱସ୍ତ ହୋଇ ମୁଁ ଧରିଲି ଲେଖନୀ—

ସେଣ୍ଟ୍ରାଲ୍ ଷ୍ଟେସନ୍‌ର ସୁପ୍ରଶସ୍ତ ପ୍ଲାଟ୍‌ଫାରମ୍ ଉପରେ ସ୍ଫୁର୍ତ୍ତିଜନକ ପାଦ ପକାଇ ମୁଁ ମାରୁଥିଲି ଟହଲ୍ । ହାତରେ **Film India**—

ବଂଶୀ ନିନାଦରେ ଚମକି ଦେଖିଲି କଲିକତା ଡାକ ଗାଡ଼ି ଛୁଟି ଆସୁଛି । ବୋଧହୁଏ ବେସିନ୍ ବ୍ରିଜ୍ ଛାଡ଼ି ମିନିଟେ କି ଦୁଇ ମିନିଟ ହେବ । ଜନତା ଭିତରେ ସତର୍କତା ଆସିଗଲା । ସମସ୍ତେ ସଜବାଜ ହୋଇ ଠିଆହେଲେ ।

ଗାଡ଼ି ଆସି ପ୍ଲେଟ୍ ଫାରମ୍‌ରେ ଠିଆ ହେଲା—ଦଶଟା ପଞ୍ଚଚାଳିଶରେ । ବନ୍ଧୁବାନ୍ଧବ ଯାତ୍ରୀଙ୍କୁ ସ୍ୱାଗତ କରିବା ପାଇଁ ସନ୍ଧାନ କରି ବୁଲିଲେ । ମାନ୍ଦ୍ରାଜ । ସେଥିରେ ପୁଣି ବେଶ ପରିପାଟୀର ଆଡ଼ମ୍ବର ଯୁଗ । ଢ଼ିଲା ପାଇଜାମା ଉପରେ ପତଳା

ଲଲ୍‌ଚଟି ଗଳାଇ ଦେଇଥିଲି । ଜନ ନୟନକୁ ଆକର୍ଷଣ କରିବା ମୋର ସୌଖୀନତାର ବାହାରେ । ସରଳତା ଭିତରେ ସୁନ୍ଦରକୁ ପ୍ରକାଶ କରିବା ମୋର ଅଭିଳାଷ ।

କେହି ଜଣେ ଆସି ଜୋରରେ ପେଲି ଦେଲା । ତଥାପି ମନେ ହେଲା ସେ ଲୋକଟା ବଳହୀନ ! କୋଡିଏ ବର୍ଷର ଯୁବକ ମୁଁ । ପାଞ୍ଚ ଫୁଟ ସାତ ଇଞ୍ଚ ଲମ୍ବା । ଗାଡି ଉପରେ ହାତ ଭରା ଦେଇ ରକ୍ଷା ପାଇଗଲି । ମୋର ଅସାବଧାନତା ଭିତରେ ଲାଲ୍‌ଚର ପଖା ପୋକେଟ୍‌କୁ ବ୍ଲେଡ୍‌ରେ କାଟି ପାର୍ସ୍‌ଟିକୁ କିଏ ଚମ୍ପଟ୍ କରିଛି । ବଡ ବଡ ସହରରେ ଏଭଳି ପିକ୍‌ପୋକେଟିଂ ହୁଏ, ମୁଁ ଜାଣେ, ତଥାପି—ପୋଲିସ୍ ରିପୋର୍ଟ —ନା—ଗିରି-ଧରବାବୁଙ୍କୁ ଖୋଜିବାକୁ ପଡିବ ।

ଗାଡିର ଶେଷ ପର୍ଯ୍ୟନ୍ତ ଗୃଲି ତଥାପି କାହିଁ ଦେଖି-ପାରିଲି ନାହିଁ । ପୁଣି ଆସିଲି ଇଞ୍ଜିନ୍ ଯାଏଁ । ଆସି ନାହାନ୍ତି ସେ ! ତେବେ ବାଣୀ କ'ଣ ମୋତେ ଉପହାସ କରିବା ପାଇଁ ଚିଠି ଲେଖିଥିଲା ? ଗୋଟାଏ ହତାଶା ଆସିଲା, ଆଉ ତା ସଙ୍ଗେ ବାଣୀ ପ୍ରତି ଆସିଲା କ୍ରୋଧ ।

ପରାଜୟକୁ ଗ୍ରହଣ କରି ହୋଷ୍ଟେଲ୍‌କୁ ଫେରିବାକୁ ପଡିଲା । ଟେକ୍‌ସି ଭଡା ଦେବାପାଇଁ ପଇସାଟିଏ ନାହିଁ । କୁମା-ରପ୍‌ପାକୁ ଅନୁରୋଧ କରି କହିଲି, କୋଡିଏଟି ଟଙ୍କା ଦେଇ-ଥାଅନ୍ତ

ସେ ଦେଲା । ଟେକ୍‌ସିବାଲା ହାତରେ ଦଶଟି ଟଙ୍କା ଫେରଂ କଲି ।

କୁମାରପ୍ରଭା ପଚାରିଲା, କୁଆଡେ ଯାଇଥିଲ ?

ମେଣ୍ଟ୍ରାଲ୍‌କୁ ଯାଇଥିଲି, ସେଇଠି ମୋର ପାର୍ସ୍‌ଟି କିଏ ମାରି ନେଇଗଲା । ତମର ଟଙ୍କା କାଲି ଫେରାଇ ଦେବି । ଅପ୍ରସ୍ତୁତି ବୋଧକରି କହିଲି ।

ସେ ଚୀଫ୍ ଜଷ୍ଟିସ୍‌ଙ୍କ ପୁଅ । କହିଲା, ହଁ, ସେଥିରେ କ'ଣ ଅଛି ? ଆପଣ ତମେ ସେଣ୍ଟ୍ରାଲ୍‌କୁ କି କାର୍ଯ୍ୟରେ ଯାଇଥିଲ ?

ମୋର ଜଣେ ବନ୍ଧୁ ଆସିବାର ଥିଲା, କିନ୍ତୁ ସେ ଆସି ନାହାନ୍ତି ।

ଠକୁର ମତେ, ସେ ମୃଦୁକ ହସି କହିଲା ।

ନା

ସେ ଆଉ କିଛି କହିଲା ନାହିଁ । ଖୋଲି ତାଙ୍କ ମନ କଥା ଜାଣିବା ପାଇଁ ମୋ ସହିତ ତାର ଘନିଷ୍ଠତା ସେତେଦୂର ଅଗ୍ରଗତ ହୋଇ ନଥିଲା ।

ଫଳରେ ମୋର ସ୍ୱତନ୍ତ୍ର କକ୍ଷକୁ ଯାଇ ଖଣ୍ଡିଏ ଚିଠି ଲେଖିବା ପାଇଁ ବସିଲି । ସମ୍ବୋଧନ ? ପ୍ରାଣର—ବୋଲି ଡାକିବା ପାଇଁ ଘୃଣା ଜାତ ହେଲା । କିନ୍ତୁ ସେଇ ସମ୍ବୋଧନ ନଦେଇ ପତ୍ର ଲେଖା ଆରମ୍ଭ କରିବାକୁ ମୋର ମନ ଯେପରି ଅନୁମତି ଦେଇ ପାରିଲା ନାହିଁ । ଛଳନାମୟୀ ବୋଲି ଆରମ୍ଭ କରିବି ?

ପ୍ରାଣର ସ୍ପନ୍ଦନ ବନ୍ଦ ରହିଥିଲା । ଲେଖି ପାରିଲି ନାହିଁ । ଏଇ ସଂଘର୍ଷ ଭିତରେ ଅନୁଭବ କଲି ବିଷାକ୍ତ ଜ୍ୱାଳା । ଆଉ ଚିଠି ଲେଖି ପାରିଲି ନାହିଁ ।

ଘଣ୍ଟାଏ ବାଜିଲା । ଚପ୍ରାଶି ଆଣି ଥୋଇଲା ଭୋଜନ ଥାଳି । ସେ ଫେରି ଯାଉ ଯାଉ ଡାକିଲି, ମାଣି ।

ସେ ମୁହଁ ବୁଲାଇ ତାମିଲ୍ ଭାଷାରେ କହିଲା, ଏନ୍ନା

ଟଙ୍କାକିଆ ନୋଟ୍ ତିନୋଟି ଦେଇ, ସିଗାରେଟ୍ କେପ୍‌ଷ୍ଟନ୍ ଟିନ୍ ହାତରେ ଅଭିନୟ ଦେଖାଇ ଆଣିବା ପାଇଁ କହିଲି ।

ସେ ଯାଉ ଯାଉ ଫେରି ତେଲୁଗୁ ଭାଷାରେ ପଚାରିଲା, ଆଗ୍ଗିପେଣ୍ଟି ?

ଉଡି ଉଡି କହି ନଆପେଡ଼ିଟିକୁ ଖଣ୍ଡ ଖଣ୍ଡ କରି ଦେଖାଇଦେଲି ! ସେ ଚାଲିଗଲା ।

ଟେବୁଲ ଉପରେ ଗୋଡରେ ଗୋଡକୁ ଥୋଇ ଚୌକିରେ ଦୁର୍ବଳ ଦେହକୁ ଆଉଜାଇ ଦେଇଥିଲି । ଦୁଇ ହାତର ଛନ୍ଦିତ ମୁଠାଉପରେ ଥୋଡିକୁ ରଖି ସୂର୍ଯ୍ୟର ଭାସ୍ୱରତା ପ୍ରତି ଚାହିଁ ରହିଥିଲି ।

କୁମାରପ୍ପା ମୋର ସ୍କନ୍ଧ ଉପରେ ହାତକୁ ଅତର୍କିତ ଭାବରେ ପକାଇ କହିଲା, **What Mr. Brojendro ! you are so contemplative in the truest sense.**

ମୋର ନା ବ୍ରଜେନ୍ଦ୍ର ଚନ୍ଦ୍ର, ଆଉ ବାପ ମାଁ ଡାକନ୍ତି

ଫ୍ରେଣ୍ଡ୍ ବୋଲି । ହୃଦସ୍ଥ ଭାବନାକୁ ଲୁଚାଇବା ଉଦ୍ଦେଶ୍ୟରେ ଚମକି ପଡି କହିଲି, **No, no, nothing of that sort.**

ସେ ଓଡିଆ ଭାଷା ଜାଣେନି କି ମୁଁ କନ୍ନାଡ ଭାଷା ବୁଝିପାରେ ନାହିଁ । ଆମ ଦୁହିଙ୍କ ମଧ୍ୟରେ ଆଳାପ ହେଉଥାଏ କେବଳ ଇଂରେଜୀରେ । ଭଦ୍ରଘର ପିଲା ସେ । ଶାନ୍ତ ଓ ବୁଦ୍ଧିମାନ ବି । ବଡ ବଡିଆ ମନୋବୃତ୍ତି ତା ଠାରେ ନାହିଁ । ଶ୍ରୀବନ୍ତ ଓ ନମ୍ର ଭାବପୂର୍ଣ୍ଣ । କହିଲା, ଦୁଇଟା ବାଜିଲାଣି, ଆଉ ଲାଞ୍ଚ୍ ନେବ କେତେବେଳକୁ ?

ହସି ଦେଇ କହିଲି, ଦେହଟା କମିତି ଖରାପ ଲାଗୁଚି, ନ ଖାଇଲେ ଟିକିଏ ଉଶ୍ବାସ ଲାଗିବ ।

ମୋ ସହିତ କୌଣସି ଯୁକ୍ତି ତର୍କ କରି ମନ କଥା ବଢିବାକୁ ସେ ଚାହେଁନାହିଁ । ଅସଂଲଗ୍ନ ପ୍ରଶ୍ନ ଛଳରେ କୌଶଳ ମାର୍ଗରେ ଆଳାପକୁ ସେ ଯେପରି ସଂଲଗ୍ନ କରି ଆଣେ, ତାହା ବାସ୍ତବିକ୍ ଚାତୁର୍ଯ୍ୟର ପରିଚାୟକ । ଅନ୍ୟ ବିଷୟର ଅବତାରଣା କରି କହିଲା, ଆଚ୍ଛା, ଆଜି ଚମ ରେଡିଓଟା ଶୁମାନ କହିଚ କିଆଁ ?

ଏ ପ୍ରଶ୍ନ କାହିଁକି ? ବୁଝି ହେଲାନି । କହିଲି, ଏ ମଧ୍ୟାହ୍ନ ପ୍ରୋଗ୍ରାମ ଗୁଡାକ ନିହାତି ବାଜେ, କେବଳ ରେକାର୍ଡ ଆଉ ଥାର୍ଡ ରେଟ୍ ଆର୍ଟିଷ୍ଟଙ୍କ କାନ୍ଦୁଣୀ ଛଡା କିଛି ନୁହେଁ ।

ନା, ନା, ମୁଁ ସେ ହିସାବରେ କହୁନି; କହୁଚି ସାଢ଼େ

ଦୁଇରେ ଆଜ ତମ ଜାତିର କେହି ଜଣେ ନାରୀଙ୍କ ବୀଣା ସମେତ କଣ୍ଠ ସଙ୍ଗୀତ ଅଛି । ସେଇ ପ୍ରୋଗ୍ରାମକୁ କାଲେ ତମେ ଶୁଣିବାକୁ ଶ୍ରଦ୍ଧାନ୍ୱିତ ହେବ ବୋଲି । ତହୁଁ ଟିକଏ ନୀରବ ହୋଇ କହିଲା, ନିଜ ଜାତିର ସମ୍ମାନ ଶୁଣିଲେ ଆନନ୍ଦ ପାଇବା ସ୍ୱାଭାବିକ ନୁହେଁକି ?

ନାଁଗି !

ହଁ –

ନା କଣ ?

ସେ ଟିକଏ ଚକିତ ହୋଇ କହିଲା, ଭୁଲିଗଲି, କାଷ୍ଟନାର୍‌ଟାକୁ ଆଣେ । ସେ ଉଠି ବହି ଆଣିବା ପାଇଁ ଗଲା ।

ତାଇର ଭିତରୁ ବୀଣାର ଫୋଟଟିକୁ ଦେଖିଲି । ତା'ର ରୂପ ସୌଷ୍ଠବ ବିରହ ଯାତନାରେ କ୍ଷୁର୍ଣ୍ଣ ହୋଇ ଯାଇଥିବ ! ତାର ସେଇ ଅଧର ପ୍ରାନ୍ତର ଇଷତ୍ ହାସ, ଖଞ୍ଜରୀଟ ନେତ୍ର ଯୁଗଳର କମ୍ର ଚାହାଣୀ, ବଦନମଣ୍ଡଳର ଶାନ୍ତ ଜ୍ୟୋତି, ସବୁ ମଉଳି ଯାଇଥିବ । ହାୟ ଅଭାଗିନୀ !

କୁମାରପ୍ରଭା ଟେବୁଲ୍ ଉପରେ ବହିଟାକୁ ଥୋଇ କହିଲା,

× × ବୀଣାବାଦିନୀ ଦେବୀ ।

ପୋକେଟ ଭିତରେ ଫୋଟଟିକୁ ଲୁଚାଇ ଦେଲି । ପୋଥି ପଢ଼ି ଦେଖିଲି ମାତ୍ର ଦୁଇ ଠାରୁ ତିନିଟା ଯାଏ ବୀଣାର ସଙ୍ଗୀତ କାର୍ଯ୍ୟକ୍ରମ । କହିଲି, କିନ୍ତୁ ସେତ ଆସି ନାହାନ୍ତି ।

ବୀଣାଙ୍କୁ ମାନ୍ୟ ଦେଇ କୁମାରୀପ୍ରଭା ଠାରେ କହିବାକୁ ହେଲା ।

ତମେ ଜାଣିଲ କପରି ?

ଗତକାଲି ତାଙ୍କର ବାପଙ୍କଠାରୁ ତାର ପାଇଥିଲି, କିନ୍ତୁ ଆଜ ଷ୍ଟେସନରେ ସେମାନଙ୍କୁ ଖୋଜି ପାଇଲି ନାହିଁ । ବୋଧହୁଏ କେନ୍‌ସେଲ୍ କରିଥିବେ ।

ଆଗୁ ରେଡିଓଟା ଟ୍ୟୁନ୍ କର, ସେ ଆସିଚନ୍ତି କି ନାହିଁ ଜଣା ପଡ଼ିଯିବ—କହିଲା କୁମାରୀପ୍ରଭା ।

ସୁନ୍ଦର ଉପାୟ ଦେଖାଇଦେଲ ମୋତେ । ତଥାପି ଅସହ୍ୟ ମନେ ହେଲା । ନିଜେ ଖୋଜି ଖୋଜି ହତାଶରେ ଫେରି ଆସିଚି । ଆପଣା ଚକ୍ଷୁକୁ ଅବିଶ୍ୱାସ କପରି କରିବ ?

କୁମାରୀପ୍ରଭା ରେଡିଓ ଟ୍ୟୁନ୍ କରି ଦେଲା । ଠିକ୍ ସେତେବେଳେ ଚଳଚ୍ଚିତ୍ରର ସର୍ବଶ୍ରେଷ୍ଠ ଅଭିନେତା ତ୍ୟାଗରାଜ ଭାଗବତାରଙ୍କ ତାମିଲ୍ ରେକର୍ଡ ପ୍ରସାରିତ ହେଉଥିଲା । ଭାଷାଟା କଣ ମତ ହେଲେ ବି ଦାକ୍ଷିଣାତ୍ୟର ଯେଉଁ ଗୌରବ ତାମିଲ୍ ସଙ୍ଗୀତରେ ଅଛି ତାହା ଅନ୍ୟ କୌଣସି ଭାଷାରେ ନାହିଁ । ମୁଁ ବେଶ୍ ଉପଲବ୍ଧି କଲି ସେଇ ଗାନ-ନୈପୁଣ୍ୟକୁ !

ଏତେ ବେଳ ଯାଏ ଆପଣମାନେ ତ୍ୟାଗରାଜ ଭାଗବତାରଙ୍କ ରେକର୍ଡ ସଙ୍ଗୀତ ଶୁଣିଲେ— ପ୍ରସାରିତ ହେଲା ବେତାର କେନ୍ଦ୍ରରୁ ।

ଘଣ୍ଟା ଦେଖିଲି ସାଢ଼େ ଦୁଇ ।

ମିନଟ୍ ପରେ ଶୁଭିଲା, ଖାଣାବଳୀ ସିମ୍ ଦେଖା—ଖାଣା ସମ୍ବାଦ କଣ୍ଡ ସଙ୍ଗୀତ । ସାଙ୍ଗୀତା ଶାସ୍ତ୍ର ଜ୍ଞାନାମୃ, ରାଗାମ୍ ମୂର୍ଖାର, ଆଦରତାଳଂ, ତ୍ୟାଗରାଜଙ୍କ ସାହିତ୍ୟ ।

କୁମାରପ୍ପା ପାଟିକଲା, ଏଇତ ସେ ଆସିଛନ୍ତି !

ତାନାପୁରା ସ୍ୱର ଧୀରେ ବାଜି ଉଠିଲା । ତଥାପି ବିଶ୍ୱାସ କରି ପାରିଲି ନାହିଁ । ଖାଣା କଣ୍ଠ ପିଠାଇ ଅଳ୍ପ ସମୟ ଯାଏ ସ୍ୱର ସହିତ ମେଳ କଲା । ତହୁଁ ଗାଇଲା ।

ଅନ୍ତରର ଉଦ୍‌ବେଗକୁ ଚାପି ଧରି କହିଲି, ହଁ ସେ ଆସିଚନ୍ତି—

ଏଇଲାଂଗ ବେତାର କେନ୍ଦ୍ରକୁ ଗଲେ ତମେ ସହଜରେ ଦେଖି ପାରିବ—

ଆଚ୍ଛା, ଯାଏଁ କହି ଚୌକିରୁ ଉଠିଲି ।

କଉଁଠି ଜାଣିଚତ ?

ଟେକ୍ସି ନେଇଯିବ ଯେ ।

ଏଗ୍‌ମୋରରେ—

ଓ, ସେଇ ହଳଦିଆ କୋଠାଟା । ଆଗରେ ଗୋଟାଏ ଫୁଟ୍‌ବାଲ୍ ଖେଳ ପଡିଆ—

ହଁ, ହଁ, ସେଇ କୋଠାଟା ହସି ହସି କହିଲା କୁମାରପ୍ପା ।

ଟେକ୍ସି ଯାଇ ପୋର୍ଟିକରେ ଠିଆ ହେଲା । ସୁପ୍ରଭାଇଜର ନିକଟକୁ ଆସିଲେ । କହିଲି, ବୋଧହୁଏ ବର୍ତ୍ତମାନ ବାଣୀବିଳାସିନୀ ଦେବୀଙ୍କ ପ୍ରୋଗ୍ରାମ ପ୍ରସାରିତ ହେଉଛି—

ହଁ —

ତାଙ୍କ ସହିତ ଟିକିଏ ସାକ୍ଷାତ ହୋଇ ପାରିବ ?

ଅପେକ୍ଷା ମନ୍ଦିରରେ ବସିବା ପାଇଁ କହିଲେ । ସେତେବେଳେ ବୀଣା ଗାଉଥାଏ ଶ୍ରୁତିମନୋହର ରାଗର ମାନାସା ଶ୍ରୀ ରାମାନୁଜନ୍ କୃତିଟି । ଗାନ ଭଙ୍ଗୀର ଛନ୍ଦେ ଛନ୍ଦେ ଯେଉଁ ରସ—ଲହରୀ ଖେଳି ଉଠୁଥିଲା, ମନେ ହେଲା ତାହା ଚିତ୍ତ—ବୃତ୍ତି ଜାତ, ଯନ୍ତ୍ର—ଜନିତ ନୁହେଁ ।

ଅନୁଭବ ବିନା ଜଗତର କୌଣସି ବିଭବ ପ୍ରଦର୍ଶନୀରେ ଦକ୍ଷତା ଫୁଟାଇବା ଅସାଧ୍ୟ । କାଗଜ ଫୁଲ ଓ ବନ ଫୁଲ ଦୁଇଟି ପଦାର୍ଥ ଭିତରେ କେଉଁଟି ନୈସର୍ଗିକ, କେଉଁଟି ବ୍ୟାଜ ଆମେ ସହଜରେ ଜାଣିପାରୁ । ପ୍ରତିଭା ନଥାଇ ସାଧନା କୃତିତ୍ୱ ସମ୍ପନ୍ନ ହେଲେ ମଧ୍ୟ ଗୌରବାନ୍ୱିତ ହେବନାହିଁ । ପନ୍ଦର ବର୍ଷର କିଶୋରୀ ବୀଣା ଯେତେବେଳେ ଯେଉଁ ସଙ୍ଗୀତ-ଶ୍ରୀ ପରିଶୁଥିଲା ବାସ୍ତବିକ ତାହା ଅତୁଳନୀୟ । ତା ସହିତ ନିବିଡ ସମ୍ପର୍କ ଥାଇ ସୁଦ୍ଧା ଭଲ ଭାବରେ ତାଠାରୁ ଗୀତ ଶୁଣିବାର ଅବକାଶ ପାଇ ନଥିଲି । ସଙ୍ଗୀତ-ସନ୍ଦର୍ଭରେ ବୀଣା ଏତେ ଦୂର ପ୍ରଗଲ୍ଭଶାଳିନୀ ହୋଇଛି, ତାହା ଦେଖି ମୁଁ ଅବାକ ହେଲି, ଅପୂର୍ବ ଗୌରବ ଅନୁଭବ କଲି ।

ବେତାର ନିବନ୍ଧ ଶେଷହେଲା । ଗିରିଧରବାବୁ ଷ୍ଟୁଡିଓ ଭିତରୁ ବାହାରିଲେ । ଉଠି ନମସ୍କାର କଲା ବେଳକୁ ବୀଣା ମତେ ପ୍ରଣାମ କରି ସାରିଲାଣି । ଗିରିଧରବାବୁ ମୋର କାନ୍ଧ ଉପରେ ହାତ ଥାପି କହିଲେ, କି ହୋ ଚେତେବେଳେ ? ମୋର ତାର ପାଇନ ?

ଷ୍ଟେସନରେ ଖୋଜି ଖୋଜି ଦେଖି ପାରିଲି ନାହିଁତ—

କୁଆଡେ ବାଟବଣା ହୋଇ ଯାଇଥିବ—ମୋ ସହିତ ତାଙ୍କର ଏ ଅପ୍ରତ୍ୟାଶିତ ହାସ୍ୟ ମୁଁ ଜାଣେ । ବୀଣାକୁ କହିଲି, ବେଶ୍ ଗାଉଛୁ ବୀଣା । ତୋର ଏ ଭଲ ଗାନ ମୁଁ କେବେ

ଶୁଣି ନଥିଲି —

ସହାସ୍ୟ ମୁଖରେ ସେ କହୁ କହିଲା ନାହିଁ ।

ଅଣିକଅା ରେଭେନ୍ୟୁ ଷ୍ଟେମ୍ପ୍ ଉପରେ ଦସ୍ତଖତ୍ କରି ସେ ପାଇଲା ଖଣ୍ଡିଏ ଅଣି ଟଙ୍କିଆ ଚେକ୍ । ମୁଁ ଟେକ୍ସିକୁ ଡକା କରି ତାଙ୍କ ଟେକ୍ସିରେ ବସିଲି । ଗାଡି ଚାଲିଲା ।

ପଚାରିଲି, ପେର୍ ତୋର ପ୍ରୋଗ୍ରାମ୍ ଅଛି ?

୨୮-୧୦-୪୨ ରେ ଅଛି ବୋଧ ହୁଏ

ଗିରିଧର ବାବୁ କହିଲେ ଆସ୍ଥ ଫ୍ରେଣ୍ଡ୍, କେତେ ବନ୍ଧୁଙ୍କ ସହିତ ମୋର ଦେଖା କରିବାର ଅଛି । ବୀଣା କହୁଥିଲା ମିଉ-ଜିୟମ୍, ଜୁ ଆଦି ଦେଖିବ ବୋଲି । ତମେ ଟିକିଏ ବୁଲାଇ ଆଣିବ ?

ମିଉଜିୟମ୍ ବନ୍ଦ ହୋଇ ଯାଇଥିବ । ଜୁ ଟା ଦେଖି ଆସିଲେ ହେବ ।

ହଁ, ଯାହା ହେଉ, ଦେଖିବା ପାଇଁ ବୀଣା ଅଡବ ଲଗା-ଇଛି । ଏଇଲାଗେ କେତୋଟା ଜାଗା ଦେଖାଇ ଆଣ । କାଲି ସକାଳୁ ବାକତକ ବୁଲି ଆସିବ ।

ଗାଡ଼ି ଟେକ୍ସି ଷ୍ଟେଣ୍ଡ ଠାରେ ଠିଆ ହେଲା । ଗିରିଧର-ବାବୁ ଅନ୍ୟ ଏକ ଟେକ୍ସି ଧଇଲେ । ଆମର ମୋଟର ଚାଲିଲା ଜୁ ଆଡ଼େ ।

ମିନଟେ ଦୁଇ ମିନଟ ଚାଲିଗଲା । ବୀଣାର ଏ ମାରବତା

କାହିଁକି ? କାହାର ପାଖରେ ତାର ଏ ଅକୁହା ଅଭିମାନ ଲୁଚି-ପାରିଲା । କହିଲି, ବୀଣା ଭଲ ଅଛ ?

ଦେଖାର ଅଧ ଘଣ୍ଟା ପରେ କୁଶଳତା ପଚରାଯାଉଚି । ହସ ସମ୍ଭାଳି ବୀଣା କହିଲା, ଯିମିତି ଦେଖୁଚ—

ସୁସ୍ଥତା ଉପରେ ସିନା ତମର ଆଶ୍ବାସନା,—କଣ୍ଠରେ ଥିଲା ବ୍ୟଥା ।

ଗୁମାନ ଦେଖାଇ ପ୍ରଣୟ ନେବା ପାଇଁ ସେ ଚାହେଁ । କହିଲି, ହଁ, ବୀଣା, ତମର ଅଶ୍ରୁ ପାଇଁ ମୁଁ ଦାୟୀ, କିନ୍ତୁ ପୋଛି ପାରିବ କିପରି ?

ଅହେତୁକ ଭାବରେ ମୋ ଜାନୁ ଉପରେ ହାତ ପକାଇ ବୀଣା କହିଲା, କି ଚିଠି ଖଣ୍ଡେ ଦେଲେନି ?

ଯଦ୍ଧ ତମ ବାପ ହାତରେ ସେଇଟି ପଡେ ?

ହଁ-ପଦଟି କେବଳ ତାର କଣ୍ଠରୁ ବାହାରି ପଡିଲା ।

ଗାଡି ଯ୍ର ପାଖରେ ପହଞ୍ଚିଲା ।

ଆଠ ବର୍ଷ ପରେ ମାନ୍ଦ୍ରାଜକୁ ବୀଣାର ଏ ଆଗମନ । ଲଳିତା ଦେବୀଙ୍କ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଗିରିଧର ବାବୁ ସେଇଁଠି ଆଠ ମାସ ଥିଲେ, ସେଇ ସାତ ବର୍ଷର ପିଲା ସମୟରେ ବୀଣା ମାନ୍ଦ୍ରାଜ ଦେଖିଥିଲା । ଆଜି ସେ ଏଇ ଉଚ୍ଚ ନାଗରିକତା ଭିତରେ ଚାଲିବା ପାଇଁ ସେପରି ସଙ୍କୋଚ ଅନୁଭବ କରୁଚି ।

ଦୁହେଁ ଗାଡିରୁ ଓହ୍ଲାଇ ଚାଲିଲୁ । ବୀଣା ରେଲକର୍ଣ୍ଣ

କେମେନ୍ତ ଧରି ଟେନ୍ସନ୍ ଛାଡ଼ି ବସିଲା । କେଉଁଠି ନୀଳ ମୟୂର ଆନନ୍ଦରେ କଳାପ ବିସ୍ତାର କରି କେକା ରବରେ ଉପବନ ଉଚ୍ଛୁଳାଇ ଦେଉଛି; କେଉଁଠି ହଂସ ଦଳର କଳ କଳ ନିନାଦରେ ପଙ୍କଜ ବିକସିତ ବିଶାଳ ପୁଷ୍କରିଣୀ ମୁଖରି ଉଠୁଛି; କେଉଁଠି ମତ୍ତ କରୀ ତାର କୋମଳ କରକୁ ପ୍ରେୟସୀର କପାଳ ଉପରେ ଘଷି ସମୀର ଦୋଳାୟିତ ନୀଳୋତ୍ପଳ ସମ ଝୁଲାଇ ଆଣୁଛି ।

ବୀଣା ଦୁଇଟି ଚୂମ୍ବନାଶକ୍ତ ଶୁକ ପକ୍ଷୀର ଫୋଃ ବାହାର କଲ଼ ମୋ ଆଡେ ଚାହିଁଲା । ମୁଁ ହସିଦେଲି । ତହୁଁ ସେ ମୋ ହାତକୁ ଟାଣି ଧରି କହିଲା, ଆସ—

ଦୁହେଁ ଅନ୍ୟ ଏକ ଦୃଶ୍ୟ ଦେଖିବା ପାଇଁ ଗଲୁ । କ୍ଷଣ କାଳ ପରେ କହିଲା, ଆମ ଦୁହିଙ୍କୁ ଦେଖି ଲୋକେ କ'ଣ ଭାବୁଥିବେ ?

ଜନ-ନୟନର ଜାଗ୍ରତାକୁ ଏଡ଼ି ଆମେ ଚାଲିଚ଼ୁ ତରୁଣ-ତରୁଣୀ—ଏ ଯେପରି ଆମ ଜୀବନର ସର୍ବ ପ୍ରଥମ ଯାତ୍ରା । ବୀଣାର କରପୁଟ ମୋ ହାତରେ ଛନ୍ଦିତ ଥିଲା । ଏତେ ଦିନର ଗୁପ୍ତ ପ୍ରଣୟ ଆଜ ଯେପରି ମୁକ୍ତ ଆକାଶର ବିହଗ ସମ ଅନନ୍ତ ତଳେ ପହଁରି ଯାଉଛି; ଆଉ ସେଥିରେ ଅନ୍ତର ପୁଲକ ଉଠୁଛି । କହିଲି, ଭାବୁଥିବେ ତୁ ମୋର—

ଅପମାନ ହେବ କହିଲେ ?

ଭାବୁଥିବେ ସ୍ତ୍ରୀ ବୋଲି-- ଏତିକ କହି ତା ହାତରୁ

କେମେଇଟି ଛଡ଼ାଇ ଆଣିଲ ।

ସେ ଛୁଆଙ୍କ ପରି କହିଲା, ଉଁ—ନେଇଗଲ
ମୁଁ କେତୋଟି ସ୍ନେପ୍ ନେବ ।

ବୀଥି ଉପରେ କେତେ ଯୁବକ-ଯୁବତୀ, ପ୍ରୌଢ଼-ପ୍ରୌଢ଼ା, ବାଳକ-ବାଳିକା ଚାଲିଥିଲେ । ଲତିକା ନିକୁଞ୍ଜ ଯାର ଶୋଭା ବେଶ୍ ବଢ଼ାଉଥିଲା । ବୀଣା ଟିକିଏ ଆଗେଇ ଯାଉ ଯାଉ ଟାଣି ଧରି କହିଲ, ଏଇ ଦେଖ, ଚ୍ୟାମେଲୀ ଫୁଲକୁ ପରା ତୁ ଭଲପାଉ

ସେ ଫେରି ଚାହିଁ କହିଲ, ଏଇଟା ଚ୍ୟାମେଲୀ—

ଦେଖୁନା । ସଲଗ୍ନ ଫୁଲ ଦୁଇଟି ତୋଳି ବୀଣା ହାତକୁ ବଢ଼ାଇ ଦେଲ । ସେ ଥରେ ନିବିଡ଼ ଆଘ୍ରାଣ କରି, କବରୀ ଭିତରେ ଖଞ୍ଜି ଦେଲ ଅତି ଧୀରେ ।

ରାତି ଆସୁଥିଲ । ପ୍ର ଭିତରେ ଲୋକ ଗହଳ କମି ଆସୁଥିଲ । କହିଲ, ଯିବା ଚାଲ—

ଦୁହେଁ ଟେକ୍ସିକୁ ଫେରିଲୁ । ଗାଡ଼ି ଚାଲିଲ ।
ପଚାରିଲ, ଏଇଠି କେତେ ଦିନ ରହୁଚ ?

ବାବା କହୁଥିଲେ କାଲିକି ଚାଲି ଯିବେ ବୋଲି; ମେଶିନା ଆଜେ ଥରେ ବୁଲି ଆସିବା ?

ନା, ବୀଣା, ବାବା ଅପେକ୍ଷା କରିଥିବେ

ବୀଣା କିଛି ପ୍ରତ୍ୟୁତ୍ତର ଦେଲା ନାହିଁ । ଗାଡ଼ି ବାସୋଟୋ ହୋଟେଲ୍ ଦିଗେ ଚାଲିଲ ।

କୌଣସି ମତେ ବି.ଏ. ପରୀକ୍ଷାଟା ଶେଷ ହୋଇ ଯାଇଛି । କୁମାରପ୍‌ପାର ନୋଟ୍‌ସ୍ ଗୁଡ଼ିକ ସାହାଯ୍ୟ କରିଛି । ସେ ବହୁ ପୋଥି-ସମୁଦ୍ରକୁ ଘାଣ୍ଟି ଅମୃତ ବାହାର କଲା, ଆଜି ମୁଁ ସେଇ ଅମୃତ ଚାଖି ପରୀକ୍ଷା ସଙ୍କଟ ପାର ହୋଇଗଲି । ସେଥି ପାଇଁ କୁମାରପ୍‌ପାକୁ ଧନ୍ୟବାଦ ନ ଦେଇ ରହି ପାରିଲି ନାହିଁ ।

ପରୀକ୍ଷା ସରୁ ସରୁ ବିଶାଖପାଟଣାରେ ପଢ଼ୁଥିବା ପାଇଁ ବାବାଙ୍କଠୁଁ ଚିଠି ପାଇଲି । ଲେଖିଥିଲେ, ପରୀକ୍ଷା ଶେଷ କରି ଶୀଘ୍ର ଆସିବୁ । କେତେକ ବିଷୟ କଥା ହେବାର ଅଛି ।

ଏ ଡାକରା କାହିଁକି ? ଯେଉଁ ପୁଅକୁ ସେ ଦୂର ଦେଶକୁ ଛାଡ଼ି ଦେବା ପାଇଁ କୁଣ୍ଠିତ ମନେ କରି ନ ଥିଲେ ଆଜି ତା

ପ୍ରତି ଏ ଆଗ୍ରହ କାହିଁକି ?

କୁମାରପ୍ରଭା ଠାରୁ ବିଦାୟ ନେଇ ବିଶାଖ ପାଟଣାରେ ପହଞ୍ଚିଲି । ତା ସହିତ ମୋର ଚିଠି ପତ୍ର ବରାବର ଚାଲିଲା । ଆମର ପରସ୍ପର ସ୍ନେହ ମମତା ସେଥିରେ ବେଶ୍ ଭାବରେ ଆଦାନ ପ୍ରଦାନ ହେଉଥିଲା । ମଝେ ସେ ଝାପସା କରି କେତେ କଥା ଲେଖେ, ବୀଣା ସହିତ ତାର ପରିଚୟ ନଥିଲେ ବି ଛଳନାରେ ମଝେ ଫଗୁଆ କରିବାକୁ ଆମର ଯୁଗ୍ମ ଶୁଭ ସମାଗ୍ରର ପତ୍ରରେ । ବୀଣାର କଣ୍ଠ ସହ ମୋର ବେହେଲାର ସଂଯୋଗ, ବୀଣାର ତାଳ ଭିତରେ ମୋର ଲୟର ସନ୍ନିବେଶ କିପରି ଚାଲିଛି—ଇମିତି ସେ କେତେ କଥା ଲେଖେ । ମୁଁ ଜବାବ ଦିଏ—ଲୟ ଭିତରେ ଅପଲୟ, ଶ୍ରୁତି ଭିତରେ ଅପସ୍ବର, କଳ୍ପନା ଭିତରେ କଠୋରତା ନ ଆସିଲେ ସୌନ୍ଦର୍ଯ୍ୟର ଗୌରବ ବଢ଼ିବ କିପରି ?

ସେଣ୍ଟ୍ରାଲ କ୍ଲବ୍ ଉପରେ ସନ୍ଧ୍ୟା ନଇଁ ଆସିଥିଲା । ସେ ଦିନ ମୋର ଜନ୍ମ ଦିବସ । ନିବିଡଭାବରେ ଭାବରେ ଉତ୍ସବ ଚଳାଇଦେବା ପାଇଁ ପଡିଲା । ଏଇ କେତେ ଦିନ ହେଲା ବାବାଙ୍କର ସ୍ବାସ୍ଥ୍ୟ ଭଙ୍ଗ ହୋଇଛି । ତେଣୁ ଏଇ ଉତ୍ସବରେ ଯୋଗ ଦାନ କରିବାପାଇଁ ସମସ୍ତ ବନ୍ଧୁବାନ୍ଧବଙ୍କୁ ଡକା ଯାଇ ନଥିଲା । କେବଳ ଆତ୍ମୀୟ ହୋଇ ଆସିଥିଲେ ଗିରଧରବାବୁ-ସକୁଟୁମ୍ବେ ।

ଏଇ ରକମ ଭୋଜ ଆମଘରେ ପ୍ରାୟ ପ୍ରତିଦିନ ଚାଲିଥାଏ ।

ତେଣୁ ସେ ଦିନ ମନରେ କୌଣସି ବିଶିଷ୍ଟ ଆନନ୍ଦ ଉପଲବ୍ଧି କରି ନ ପାରିବା ସ୍ୱାଭାବିକ । କିନ୍ତୁ ବୀଣାର ଆଗମନ ହିଁ ସେଥିରେ ଯାହା ବୈଶିଷ୍ଟ୍ୟ ସୃଷ୍ଟି କରିଥିଲା ।

ସଦ୍ୟ ପ୍ରକାଶିତ ବହି ଖଣ୍ଡିଏ ଲଳିତା ଦେବୀଙ୍କୁ ଉପହାର ଦେବା ପାଇଁ ଆଣିବାକୁ ଉପର ମହଲାକୁ ଗଲାବେଳେ- ବୀଣା ମୋର ପଛେ ପଛେ ଚାଲିଲା । ନିଶବ୍ଦ ଚରଣ ପାତରେ ବୀଣା ପଛରୁ ଆସି ମୋ ପଖା-ପୋକେଟ୍ ଭିତରେ କଣ ଗୋଟାଏ ଭରି ପକାଇ ଦେଲା । ଚମକି ପଡ଼ି ଦେଖିଲି ସେ ତଳକୁ ଚାଲି ଯାଉଛି ଭବ୍ୟ ଷ୍ଟେର ପରି । ତା ପଣତ କାନିକୁ ଧରିଲି । ସେ ଖିଲ ଖିଲ ହସି କହିଲା, ଛାଡ, ନଇଲେ ଚୁଣ୍ଡ କରିବି ।

କର୍, ଏତିକି କହି ଜୋରରେ ଟାଣି ଆଣିଲି । ସେ କିଛି ନ କହି ସାଧୁ ପିଲାଟି ପରି ଆସିଲା । କହିଲି, ଚୁଣ୍ଡ କଲୁନି କିଆଁ ?

କଲିନି, ତମେ ଅପ୍ରସ୍ତୁତ ହେବ ବୋଲି ।

ଓ—ତେବେ ଭଦ୍ର ପିଲାଟି ଭଳି ଗଲୁଣି କହି ପୋକେଟ୍ ରୁ ଜିନିଷଟାକୁ ବାହାର କଲି । ପେଡ଼ି ଭିତରେ ନୀଳ ପଥର ବସା ଷ୍ଟୋନ୍ ମୁଦ୍ରିକାଟି । ନୀଳ ରଙ୍ଗରେ ମୋର ଆଦର ଥିବା କଥା ବୀଣା ଜାଣେ । ତେଣୁ ମୋର ଜନ୍ମ ଦିବସ ଉପଲକ୍ଷେ ଏ ପ୍ରଣୟ ଉପହାର ଦେଇଛି । କହିଲି, ଏଇଟା କଣ ?

ମୁଁ ଜାଣେନାହିଁ !

ଧେତ୍, ସତ କହ । କହିବୁ ନା ଫୋପାଡ଼
ଦେବି

ହଁଅ ।

ଫିଙ୍ଗି ଦେବାର ଅଭିନୟ କଲି ବେଳକୁ ସେ ମୋର
ହାତ ଧରି କହିଲା, ନା, ନା, ସେଇଟା ମୋର, ତମେ
ନେବାକୁ ହେବ ।

ମୋ ପୋକେଟ୍ ଭିତରକୁ ଉଡ଼ ଆସିଲା କପରି ?

ମୁଦ୍ରିକାଟି ଛଡ଼ାଇ ନେଇ ମୋର ଅନାମିକାଙ୍ଗୁଳିରେ
ଲଗାଇ ଦେଲା । କହିଲା ଏଇଟା ମୋର ପୁରସ୍କାର ।

ଓ-ବୁଝିଚ, ସେଇ ଲଗ୍ନ କଥା ଶୁଣି ଦେଇଚ, ନୁହେ ?

କଣ ?

ମାନେ ସିନ୍ଦୁର ଟୋପା ଆଙ୍କିଲା ବେଳକୁ ଏଇଟା
ମୋର ଅଙ୍ଗୁଠିରେ ଥିବାକୁ ହେବ, ନୁହେ ?

ତଥାପି ପଚାରିଲା, କେଉଁଠି ?

କୋମଳ ଗଣ୍ଡ ଉପରେ ମୃଦୁ କରାଘାତ କରି କହିଲି,
ତୋ କପାଳରେ ।

ତଳରୁ ଲଳିତା ଦେବୀ ଡାକଲେ, ବୀଣା —

ବୀଣା ମୋ: ଆଡେ ଥରେ ଚାହିଁ 'ଆସିବ' ବୋଲି
କହି ଚାଲିଗଲା ।

— ବନ୍ୟାର ଦୁଇଟି ଫୁଲ —

ପରାଗ ଭିତରେ ମକରନ୍ଦ ଯେପରି ସାନ୍ଦ୍ର ହୋଇ ଆସୁଛି, ପ୍ରଣୟ-ଉପବନରେ ଜୀବନ-କୁସୁମ ଯେପରି ଫୁଟି ଆସୁଛି, ହୃଦୟ-ଗହ୍ୱରରେ ସ୍ନେହ-ଝରଣା ଯେପରି ଝରି ପଡ଼ୁଛି, ତାହା ମୁଁ ଉପଭୋଗ କଲି । ବୀଣାର ଏଇ କ୍ଷୁଦ୍ର ସାଂସାରିକ ଚଳନରେ । ସ୍ନେହରେ ସେ ମତେ କହିଗଲା, ଆସିବ—ଯେପରି ମୋ ସହିତ ଘର-ସଂସାର କରି ତାର ଜୀବନର କେତେ କାଳ ଅତି-ବାହିତ ହୋଇ ଯାଇଛି ।

ପୁରସ୍କୃତ ମୁଦ୍ରାଟିରେ ଦେଖିଲି ବୀଣାର କମନୀୟ ଜୀବନ-ଧାରା ।

ଶୁଣିଲି ମଧୁର ସଙ୍ଗୀତ । ବୀଣା ତାର ମୁରଲିଜିତ କଣ୍ଠ ଫିଟାଇ ବଲ୍ଲକୀର ଝଙ୍କାରକୁ ଅପମାନିତ କରୁଛି । ହୃତ୍ପିଣ୍ଡ ବାଜୁଛି । ତଥାପି ମନେ ହେଲା ତାହା ଯେପରି ବୀଣା କଣ୍ଠର ପ୍ରତିଧ୍ୱନି ।

ସୁମ ଆସି କହିଲା, ଆସ ବାବା ଡାକୁଚନ୍ତି—

କଳ୍ପନା ଉପରେ ବୀଣାର ସଙ୍ଗୀତ ପରଶ ଯେଉଁ ସମ୍ମୋହନ ଆଣି ଦେଇଥିଲା, ହଠାତ୍ ଭାଙ୍ଗିଗଲା । କହିଲି, କଅଣ ?

ଆସ—ବାବା ଡାକୁଚନ୍ତି ହାତ ଟାଣି ଧରି କହିଲା ସୁମ ।

ବାବା ଓ ଗିରିଧରବାବୁ ବସି ଗପ ବାଡ଼ୁଥିଲେ । ମତେ ଦେଖି ଗିରିଧରବାବୁ କହିଲେ, କହୋ, ଆଜି ପରା ତମର ଜନ୍ମ ଦିବସ, ଭୋଜ ଭାତ କାହିଁ ?

ମୋ ସମ୍ଭ୍ରତ ଗିରଧରବାବୁଙ୍କ ଏ ହାସ୍ୟ ନୂଆ ନୁହେ । ବୟସରେ ବଡ ଥାଇ ମଧ୍ୟ କୌତୁକ କରିବା ପାଇଁ ସେ କୁଣ୍ଠିତ ମନେ କରନ୍ତି ନାହିଁ । ସେ ବଡ ହାସ୍ୟ ପ୍ରିୟ ।

ଭୁଲି ରହିଲି ।

ସେ ମୋ ହାତକୁ କୋଟିଏ ଲମ୍ବା କଭର ବଢ଼ାଇ ଦେଇ କହିଲେ, ଏଇଟା କଣ ଜାଣିଲକି ?

ନା

ଏଇଟା ନେଇ ତମ ମାମୀଙ୍କୁ ଦିଅ, ଆଜ ସୁଧା ସହିତ ତମର ବାହା କରିବା ପାଇଁ କହ, ବୁଝିଲ—ବାବାଙ୍କ ଆଗେ ଗୁହିଁ ଗୁହିଁ କହିଲେ ଗିରଧରବାବୁ ।

ମଣିଷକୁ ଅପ୍ରସ୍ତୁତ କରିବା ପାଇଁ ବଡ ଧୁରନ୍ଧର ଲୋକ ପରି ଜଣାଗଲେ । ମାନ୍ୟ ଗଣ୍ୟ ହୋଇ ବାବାଙ୍କ ପାଖରେ ମତେ ଏ କଥା କହିବାକୁ ଟିକିଏ ସଙ୍କୋଚ କରୁନାହାନ୍ତି କମିତି ! ବଡ ଲୋକଙ୍କର ଏ ସାତ ଚରି !

ଅନ୍ତରରେ ବାଧା ନ ପାଇଲେ ମଧ୍ୟ ବାହାରକୁ ଦେଖାଇ କହିଲି, ତୁମ ହାତରେ ପଠାଇ ଦିଅନ୍ତୁ—

ନା, ନା, ନଅହୋ, ଲଜ୍ଜା କରୁଛନ୍ତି କିଆଁ—

ବାବାଙ୍କର ନିରବତା ସେଥିରେ ସମ୍ମତି ପରି ମନେ ହେଲା । କିଛି ନ କହି ସୁମ ହାତକୁ ବଢ଼ାଇ ଫେରିଲି । ସୁମ ମୋ ପଛେ ପଛେ ଫୋଟଟି ଦେଖି ଦେଖି ଆସୁଥାଏ ।

ଫଳ ଆଜ କାହାର ହୋଇଥିବ ? ବୀଣାର ହୋଇ ନ ଥିବ ? ଦେଖିବା ପାଇଁ ପ୍ରବଳ ଆଗ୍ରହ ଜନ୍ମିଲା । ସୁମ ଧାଇଁ ଆସି ଏଇଟା ବୀଣା ଅପାର ଫୋଟ, ଏଇ ଦେଖ—କହି ବଢ଼ାଇ ଦେଲା ।

ଆଶ୍ୱସ୍ତ ହେଲା । ଦୀର୍ଘ ବୀପ୍ସାର ସଫଳତା କଳ୍ପନାରେ ପ୍ରାଣ ଛନ୍ଦୋମୟ ଅଭିସାର ରତ ସ୍ରଷ୍ଟାର ଚରଣ ତଳେ ପ୍ରଣତ ହୋଇ ଆସିଲା ।

ସୁମକୁ ଫେରାଇ ଦେଲ । ସେ ଅଥୟ ହୋଇ ଧାଇଁ ଗଲା-ମାମୀଙ୍କୁ ଏ ଶୁଭ ବାର୍ତ୍ତାଟା ଜଣାଇ ଦେବା ପାଇଁ ବୋଧହୁଏ ।

ବୀଣା ଝପଞ୍ଜ ବଜାଇ ଗାଉଥିଲା ଗୀତ । ପାଖରେ ମାମୀ, ଲଳିତା ଦେବୀ, ଅରୁ ଆଜ କେତେ ଜଣ ଭଦ୍ର ମହିଳା । ସଙ୍ଗୀତରତା ବୀଣା ଆଗରେ ଫୋଟଟିକୁ ଦେଖାଇ ସୁମ କହିଲା, ଏଇ ଦେଖିଲ, ପୁଙ୍କୁ ନନା ବାହା ହେଉଚନ୍ତି—

ଦଶ ଏଗାର ବର୍ଷର କୁମାରୀ ସୁମ । ଆନନ୍ଦର ଉଚ୍ଛ୍ୱାସ-ରେ କହି ପକାଇଲା— କିନ୍ତୁ ବୀଣା ଏ ଜନ ଗୋଷ୍ଠି ଭିତରେ ତାହା କିପରି ଗ୍ରହଣ କରିବ ଭାବି ନଥିଲା । ତହୁଁ ମାମୀର ହାତକୁ ଫଳଟି ବଢ଼ାଇ ଦେଇ କହିଲା, ଏଇଟା ନନା ହାତରେ ମଉସା ଦେଲେ, ନନା ମୋ ହାତରେ ତୋ ପାଖକୁ ପଠାଇ ଦେଇଚନ୍ତି—

ବୀଣା ଏ ନାରୀ ସମାଜ ଭିତରେ ବଡ ଅସ୍ୱସ୍ତି

ବୋଧକଲା । ତାର ବ୍ରୀଡାସ୍ନାତ କଣ୍ଠରୁ ସଙ୍ଗୀତ ଫୁଟି ପାରୁନାହିଁ, ସେ ଭଲ ଭାବରେ ଗାଇ ପାରୁନାହିଁ ।

ହଠାତ୍ କେହି ଜଣେ ହାସ୍ୟପ୍ରିୟା ବୃଦ୍ଧା ଆବୃତ୍ତି କରି ଉଠିଲା,

ଘୁଡଲେ ଘୁଡ ହେଉନାହିଁ, ନଘୁଡଲେ ଆଉ ଗତି ନାହିଁ
ଚୂଡ଼ାମଣି ଚନ୍ଦ୍ରାକୁ ନାଗ ଧଇଲା ଦୁର୍ଯୋଗ
ସମ୍ବାଦ ରଖିଥିଲା କିଏ,
ଲୋ ପ୍ରାଣ ସହି—

ବୀଣା ଏ ପଦଟି ଶେଷ ନ ହେଉଣୁ ଗୁଲିପିବାକୁ ଉଠିଲା ।

ଅନ୍ୟ ଏକ ବୃଦ୍ଧା କହିଲା, କାହିଁକି ଗୁଲିଯାଉଚ ମ, ଲୋକ ଗୁଡାକ ପିଲାଟାକୁ ରଖାଇ ଥୋଇ ଦେବେନି ?

ପୁଣି ସେଇ ହାସ୍ୟପ୍ରିୟା କହିଲା, ହଁ, ଏଇଠି ଆଉ ବସିବେ କାହିଁକି, ଗୁଲି ଯ ଗୋ ଭମର ତାଙ୍କ ପାଖକୁ—

କେତେ ହାସ୍ୟ କୌତୁକ ଆଳାପ ସଳାପ ଭିତରେ ଏ ଅଧ୍ୟାୟ ଶେଷ ହୋଇଗଲା । ସେଦିନ ବୀଣା ମୋ ଆଡେ ଗୁହିଁ ନାହିଁ । ମାଉସୀ କହିଲେ, ଫ୍ରେଣ୍ଡ୍‌କୁ ଜୁହାର କରୁନୁ—

ସେ କିଛି ଉତ୍ତର ନଦେଇ ଗାଡ଼ି ଚଢ଼ିଲା ।

— ବନ୍ୟାର ଦୁଇଟି ଫୁଲ —

ମୋଟର ଚଢ଼ିଲା ବେଳକୁ ମାଉସୀ ଓ ମାମୀ ପରସ୍ପର ଚାହିଁ ଚାହିଁ ହୋଇ ହସିଲେ । ଏ ହସ ଝଡ଼ମସ୍ତୁରେ ଆମର ଜୀବନ-ଶିର ଉପରେ ଯେପରି କଲ୍ୟାଣ-କୁସୁମ ବୃଷ୍ଟି ହେଲା ।

ଯେଉଁ ଦିନ ବାପ-ମାଙ୍କ ସ୍ନେହାଶୀଷ ଲଭି ଆମ ପ୍ରଣୟ-ଧାର ଗଙ୍ଗା-ଯମୁନା-ସଙ୍ଗମ ତୀର୍ଥଫଳ ପ୍ରାପ୍ତ ହେଲା, ସେ ଦିନ ଠାରୁ ବୀଣା ମୋ ସହିତ ଭଲ ଭାବରେ କଥା କହିପାରିଲା ନାହିଁ, ମୋର ଦୃଷ୍ଟି-ପଥରୁ ଅପସରି ଯିବାକୁ ଚେଷ୍ଟା କଲା । ପ୍ରକୋଷ୍ଠ ଭିତରେ ଏକାନ୍ତରେ ଡାକିଲେ ସୁଦ୍ଧା 'ଆସୁଚି' ବୋଲି ଚାଲିଯାଏ । ଧରିହୁଅଁ ଦିଏ ନାହିଁ । ଏହା ମୋର ଅନ୍ତରକୁ କେତେ ଆଘାତ ଦିଏ, ସେ ବୁଝିପାରେ ନାହିଁ ବୋଧହୁଏ । ଗଙ୍ଗା-ଯମୁନାର ଅଭେଦ ମିଳନ ଭିତରେ ବିରହ ଭୁଞ୍ଜିବାର ଆସିଲା କିପରି ! ପ୍ରୀତି ବେଭାରର ଏ ରହସ୍ୟ ଦୁବୋଧ ହେଲା ।

ସେ ଦିନ ନିର୍ଜନ ମନ୍ଦିରରେ ବୀଣାର ହାତ ଧରି କହିଲି, ଆସିବୁନି ବୀଣା —

ସେ ବଡ଼ ପାଟିରେ କହିଲା, ଛାଡ଼—ପଛେ ଆସିବ—

ନା, ଛାଡ଼ିବନି— କହି ହାତକୁ ଭିଡ଼ି ଚୁପି ଧରିଲି ।

ସେ ହାତ ଝିଙ୍କି ଦେଇ ଖସିଗଲା । ହସି ହସି ଚାଲି ଯାଉଥିଲା ।

ଦେଖିଲି ବୀଣାର କନକ ଚୂଡ଼ିର ତୀକ୍ଷ୍ଣ ସୂଚ ବାଜି ମୋର ହାତ ଚିରି ହୋଇ ଯାଇଛି । ରୁଷ୍ଟ କଣ୍ଠରେ କହିଲି, ମୋର ରକ୍ତ କାଢ଼ିବା ପାଇଁ ଏ ନାଟ ଲଗାଇଚ, ନୁହେଁ ? ହେଉ, ତୋର ଇଚ୍ଛା ପୂର୍ଣ୍ଣ ହେଉ—

ଆହତ ଫଣିମା ପରି ମୁହଁ ବୁଲାଇ ସେ କହିଲା, କ'ଣ କହିଲ ?

ନିର୍ଭିକ ଚିତ୍ତରେ କହିଲି, ମୋର ରକ୍ତ ଝରାଇବା ପାଇଁ ଏ ନାଟ ଭିଆଇଚ—

କଥା ଶେଷ ନ ହେଉଣୁ ମୋର ରକ୍ତ ସ୍ରାବ ଦେଖି ସେ ଚମକି ପଡ଼ି ଧାଇଁ ଆସିଲା । ହାତ ଉପରେ ପଣତ କାନି ଭିଡ଼ି ନିରେଖି ଚାହିଁଲା । ଦେଖିଲି ସେଇ ବିକଳ ଚାହାଣୀ ଭିତରୁ ଅଶ୍ରୁ-ଲହରୀ ଛୁଟି ଆସିଚି । ତଥାପି ହାତ ଝିଙ୍କାଡ଼ି 'ଛାଡ଼' ବୋଲି ବାହାରିଲି । ବୀଣା ମୋ ପଛେ ପଛେ ଆସି ନମ୍ର ଭାବରେ କହିଲା, କ୍ଷମା କରିବନି—

ବୀଣାର ଏ ବିକଳ ଦେଖି ମନ ତରଳି ଯାଇଥିଲା; ତଥାପି ପୁରୁଷ ମନ । କହିଲି, ଚୁପ୍ କର, କ୍ଷମା ଦେବାକୁ କାହାକୁ କହୁଚ—

ମତେ—

ଗଣିକା ଗୁଣ୍ଡାକୁ କ୍ଷମା କ'ଣ ? କୌଣପରେ ଶୋଇ-ପଡ଼ିଲି । ସେ ମୋର ପାଦ ଦେଶରେ ବସିଲା । ଘଣ୍ଟାଏ ଚାଲି-ଗଲା । କଥାବାର୍ତ୍ତା ସବୁ ବନ୍ଦ ।

ଏଇ ନୀରବତା ମଧ୍ୟରେ ବୀଣା ଯେ କି ଯନ୍ତ୍ରଣା ଅନୁଭବୁ କରୁଥିବ, ସେଇ ଭାବନା ହୃଦୟକୁ ମନ୍ଥି ପକାଇଲା । ମୁହଁ ବୁଲାଇ ଦେଖିଲି ବୀଣା ତାର କମଳ-ଆନନକୁ ଲୋତକ-ଘନ-ତୁଷାରରେ ଢେଙ୍କିଇ ରଖିଛି । ବାହୁ ଦୋହଲାଇ ଡାକିଲି, ବୀଣା—

ସେ ଚାହିଁଲା । ହୃଦୟ ଯେପରି ତାର ସଙ୍ଗହୀନ ବିଳାପ କରି ଉଠୁଥିଲା । ମୁଁ ସେଇ ବେଦନା ଜଡ଼ିତ ଚାହାଁଣୀ ଦେଖି ମ୍ରିୟମାଣ ହେଲି ।

ଭୁଜ ଧରି ଟାଣି ଆଣିଲି । ସେ ଢ଼ଳି ପଡ଼ି ମୋର ବକ୍ଷକୁ ଅଶ୍ରୁରେ ସିକ୍ତ କଲା । ଡାକିଲି, ବୀଣା—

ଷୋହଳ ବର୍ଷର କୁମାରୀ ସେ । ବ୍ୟଥା ଉଚ୍ଛ୍ୱସିତ କଣ୍ଠରେ କହିଲା, ମୁଁ ଗଣିକା ହେଲେ କାହାର ସେ ଅପମାନ—

ଦୂର ଦିଗ୍‌ବଳୟ ଆର ପାରରୁ ଧୂସର ସନ୍ଧ୍ୟା ଧରଣୀ ଉପରେ ପାରି ଦେଇଥିଲା ତାର ଆସ୍ତରଣ । ଘର ଭିତରେ ଅସ୍ପଷ୍ଟ ଆଲୋକ ଆହୁରି ଅସ୍ପଷ୍ଟ ହୋଇ ଆସୁଥାଏ । ଆକାଶ ତଳେ ତାରକା ପୁଞ୍ଜ ଶାନ୍ତ ।

ଲାଇଟ୍‌ର ସ୍ୱିଚ୍‌ଟିକୁ ଟିପି ଦେଲି । ବାବା କଡ ଲେଉଟାଇ ନିଶ୍ୱାସ ଛାଡିଲେ ।

ବାବା, କେମିତି ଲାଗୁଚି ?

କିଏ ? ଫ୍ରେଣ୍ଡ୍ ହଁ—ଲାଗୁଛି, ଭଲ ହୋଇଯିବି ?

ନିଶ୍ଚୟ ବାବା । ଏତେ ବିଚଳିତ କାହିଁକି ହେଉଚ ?

ନା,—ବିଚଳିତ ନୁହେଁ, ଫ୍ରେଣ୍ଡ୍, ମୁଁ ଭଲ ହୋଇଯିବି ।

ହେଉ, ମୋର ଆଶୀର୍ବାଦ ନଅ, ତୋର ଜୀବନକୁ ଧନ୍ୟ-ଜୀବନ କୃତାର୍ଥ କରନ୍ତୁ । ଆ, ମୋ ପାଖରେ ଟିକଏ ବସ—

ପାଖରେ ବସିଲ; ବାବା ମୋ ହାତକୁ ଧୀରେ ଭଣ୍ଡ ଧରିଲେ ।

ବୀଣା କଫି ଧରି ଆସିଲ; ବାବା ପଚାରିଲେ, କିଏ ?

ବୀଣା

ତୃପ୍ତି କଣ୍ଠରେ କହିଲେ, ବୀଣା ଆସିଲ, ହେଉ, ଆସୁ-କଫି ହାରବେ, ବାବା—ପଚାରିଲ ବୀଣା ।

ନା, ମା, ଏବେ କଫି ଆଉ ହେବନି; ଏଇଠି ବସ

ବୀଣା ବସିଲା ।

ବାବା କହିଲେ, ଫେଡ୍, କେଉଁ ଭଗବାନ ତୋର ଶୁଭ ଚାହାନ୍ତି, ତାଙ୍କୁ ତୁ ଜାଣୁ ? ତୁ ଜାଣିବୁ କପରି ? ମୁଁ ତ ଜାଣି ପାରନି—ତୁ ଘୁଣ—ଭଗବାନ ଆଉ କେହି ନାହାନ୍ତି, ବିଶ୍ୱାସ କେବଳ ଭଗବାନ । ଯେଉଁ ପୁରୁଷ ସାକାର ଓ ନିରାକାର, ସେ କେବଳ ଭଗବାନ । ଆମର ଏଇ ଆଖିରେ ଭଗବାନ ଦେଖିବେ ଆଉ ଦେଖିବେନି । ଆମର ଏଇ ଘୃଣ୍ୟ ଦେହ ପରମେଶ୍ୱରଙ୍କ ଦର୍ଶନ ପାଇବା ଆଉ ପାଇ ପାରିବା ନି । ବଡ ରହସ୍ୟମୟ ସେ କଥା । ଚଉଦ ବର୍ଷ କାଳ ଯେ ବନବାସ କରିଥିଲେ, ଶବର ଶରାଘାତରେ ପ୍ରାଣ ହରାଇଥିଲେ, କିଏ ଗୌତମୀଙ୍କୁ ସଂସାର-ଇନ୍ଦ୍ରଜାଲରୁ ଟାଣି ନେଇଥିଲେ ମୁକ୍ତ ପଥକୁ, ସେଇ—

ସେଇ ଏକା ନିର୍ବିକାର, ସର୍ବାକାର; ତାଙ୍କୁ ଏ ପାଷାଣ-ପୂଜା ଭିତରେ ବାନ୍ଧି ରଖିବା ଅସମ୍ଭବ । ମୋ ଆଖିରେ, ମୋ ଗ୍ରନ୍ଥରେ, ମୋ ଦେହରେ, ମୋର ଏଇ ପ୍ରତ୍ୟେକ ଲୋମ କୂପରେ ଯାହା ଦେଖେ, ସ୍ପର୍ଶ କରେ, ଅନୁଭବକରେ, ସେଇ ଅନାଦି ପୁରୁଷ । ଅପରିପକ୍ୱଙ୍କୁ ପାଠ ଶିଖାଇବା ପାଇଁ ଏ ଦେଉଳ ସବୁ ତିଆରି ହୋଇଚି—

ମାଉସୀ ଲଳିତା ଦେବୀ, ମାମୀ ଓ ହୃମ ଆସି ପହଞ୍ଚିଲେ । ଲଳିତା ଦେବୀ କହିଲେ , ପିଲଙ୍କୁ ଧରି ଆପଣ କ'ଣ ଚିମିତି ଶୁଣାଏ କହୁଚନ୍ତି—ବେଶି ଆୟାସ ହେବ ।

ବାବା ଦୀର୍ଘ ନିଶ୍ୱାସ ନିକ୍ଷେପ କରି ଆମ ଆଖିରୁ ଅଶ୍ରୁକୁ ଟାଣି ଆଣିଲେ । କହିଲେ, କହିବନି—ହେଉ କହିବନି—ଆଉ କାହାକୁ କହିବ ? ସେମାନେ ଛୁଆ—ମୋର ଉମ୍ଦ ତାଙ୍କୁ ମୁଁ ଉପଦେଶ ଦେବନି, ଆଉ କାହାକୁ ଦେବ !

ଆପଣ ଇମିତି ବ୍ୟସ୍ତ କାହିଁକି ହେଉଚନ୍ତି ? ପିଲମାନଙ୍କୁ ଏପରି କହନ୍ତୁନି ? କହିଲେ ମାଉସୀ ।

କହିବନି ? ହେଉ—ବାବା ଆମକୁ ପଛ କରି କଡ ଲେଉଟାଇ କହିଲେ, ତୋର ମାଉସୀ ମନା କରୁଚି, ହେଉ ମୁଁ ଆଉ କହିବନି ।

ମୁଁ ବାବାଙ୍କର ହାତ ଧରି କହିଲି, ବାବା ତମେ ଆମକୁ ଉପଦେଶ ଦେବନିତ ଆଉ ଦେବ କିଏ ?

ବୀଣା ମୋ ପଛେ ପଛେ ଆସିଲା । ମାଉସୀ ଆଖି ଠାରି ମନା କରିବାର ମୁଁ ଦେଖିଲି; ତଥାପି ବୀଣା ଆସି ମୋ ପାଖରେ ବସିଲା ।

ବାବା କହିଲେ, ତୁ ଆସିଲୁ ମା ବୀଣା, ତୋର ମା ପରା ମନା କରୁଚନ୍ତି— ତୋ ଉପରେ ମୋର କି ଅଧିକାର ଅଛି ?

ବୀଣା କିଛି ନକହି ମୁଣ୍ଡ ପୋତି ଦେଲା ।

ବାବା ଦୀର୍ଘ ନିଶ୍ୱାସ ଛାଡି ମନକୁ ମନ କହିଲେ, ଆମ୍ଭନ, ତୋର ଗତି କୁଆଡେ ? ତୁ କେବେ ଲୀନ ହେବୁ ସେଇ ବିରାଟ ଚରଣ ତଳେ ? ପ୍ରଭୁ, ଆଜ ଯାଏଁ ଏ ଜୀର୍ଣ୍ଣ ତରୀକୁ ବହି ଆଣିଚ, କାହିଁ ମୋର କର୍ଣ୍ଣଧାର ? ଆଜ ଚରଣ ତଳେ ବିଶ୍ରାମ ନେବା ପାଇଁ ଡାକୁଚ—ହେଉ, ମୁଁ ଆସିବି— ନିଶ୍ଚୟ ଆସିବି—ଏଇ ଆସୁଚି—

କ'ଣ ବାପା ଇମିତି ବାଉଳୁଚ— ଅଳ୍ପ ହସଲଇ କହିଲି ।

ସେ ଟିକିଏ ଚମକି କହିଲେ, ନେପ୍ରେ, ମତେ ଆଉ କେଶି ବିରକ୍ତ କର ନାହିଁ, ଶାନ୍ତିରେ ନିଶ୍ୱାସ ମାରିବାକୁ ସମୟ ଦିଅ, ତମ ଠାରୁ ମୋର ମୋହ ଛାଡି ଆସିଲା । ସୁମ ତଳେ ଲାଗିଲା । ବାବୁ ନଥିବା ପିଲାକୁ ଭଲ ପ୍ରସଙ୍ଗରେ ବାଧା କରି ପଠାଇ ଦେବୁ, ବୁଝିଲୁ—

ମାମୀ ଆସି କହିଲେ, କପିଠା ଥଣ୍ଡା ହୋଇଯିବ,

ଟିକିଏ ସାରି ଦିଅନ୍ତୁ—

କିଏ ? ଶାନ୍ତ—ତମେ—ତମ ଠାରେ ମୁଁ କୃତଜ୍ଞ—

ମାମୀ ବାବାଙ୍କର ପାଦ ଧରି କହିଲେ, ଇମିତି କଥା କାହିଁକି ତୁଣ୍ଡରେ ଧରୁଛନ୍ତି !

ନା, ଶାନ୍ତ, ମଣିଷ ମଣିଷ ଭିତରେ ସାନ ବଡ ଥିବା ଜୀବନ ଆଜି ଆଉ ନାହିଁ । ସେ ଦୃଷ୍ଟି ଆଜି ମୋର ନାହିଁ । ତୁମର ଶାନ୍ତ କୋଳରେ ମୋର ଜୀବନକୁ ଯେପରି କଟାଇ ଆଣିଛ, ସେଥିପାଇଁ ଆଜି ତମକୁ ଧନ୍ୟବାଦ ଦେଉଛି । ଏଥିରେ ତମେ ବ୍ୟସ୍ତ ହେବାର କଥା କିଛି ନାହିଁ । ସୁମ ତମକୁ ଲଗିଲା । ସମ୍ମାନ କରି ପଠାଇ ଦେବ—ହଁ—ଏଥର ମୁଁ ଯିବାର ସମୟ ଆସିଗଲା । ଲଳିତା ଦେବୀ କାହାନ୍ତି ? ହଁ, ଲଳିତା ଦେବୀ, ମୋର ପୁଅ ବହୂକୁ ଦେଖି ସାରିଛି, ଏଥର ମୁଁ ମୁକ୍ତ ପାଇଲି । ଫ୍ରେଣ୍ଡ୍, ମତେ ଟିକିଏ ଧରିତ—

ସୁମ କାଲେ ଡରିବ ବୋଲି ଲୋକେ ତାକୁ ନେଇଗଲେ ।

ବାବା ମୋ ଛାତି ଉପରକୁ ଆଉଜି ଶୋଇଲେ । କହିଲେ, ମତେ ଗଙ୍ଗାଜଳ ଦିଅ ।

ମାମୀ ଧକେଇ ଧକେଇ କହିଲେ, କ'ଣ ସିମିତି ହେଉଛନ୍ତି ?

ମୋ ପାଟିରେ ଗଙ୍ଗାଜଳ ଦେବନି ? ତୁମରେ ପଡନା । ପଛେ ଅନୁତାପ କରିବ—କ୍ଷୀଣ କଣ୍ଠରେ କହିଲେ ବାବା ।

ମାଉସୀ ଗଙ୍ଗାଜଳ ଆଣି ବାବାଙ୍କ ତୁଣ୍ଡରେ ଦେଇ ମାମୀଙ୍କୁ ଡାକିଲେ । ମାମୀ ଆସି ପାରିଲେ ନାହିଁ । ମୋ ହାତକୁ ବଢ଼ାଇ କହିଲେ, ଦିଅ—

ମୋର ଆଖିରୁ ଲୁହ ବାବାଙ୍କ କପାଳ ଉପରେ ଝରି ପଡ଼ିଲା । ଆଉ ବୀଣାର ଦୁଇ ଟୋପା ଅଶ୍ରୁ ମୋ ବାହୁ ଉପରେ ପଡ଼ିଲା । ବାବାଙ୍କ ଅଧରରେ ଗଙ୍ଗାଜଳ ଦେଲା ବେଳକୁ ମୋ ହାତ ସହିତ ବୀଣା ତାର ହାତକୁ ମିଶାଇ ସାରିଥିଲା ।

ତହୁଁ ମାମୀଙ୍କୁ ଡାକି କହିଲି, ମାମୀ ଦିଅ—

ମାମୀ ପଛ ଘୁଞ୍ଚାଦେଲେ । ଗୁଡ଼ିକୁ ପଥର କରି ରୁକ୍ଷ କଣ୍ଠରେ କହିଲି, ଆଉ କେବେ ଦେବ—ଆସ—

ମାମୀ ଗଙ୍ଗାଜଳ ଦେଲେ । ହଠାତ୍ ତାଙ୍କ ହାତର କାଚ ଚୂଡ଼ିଟା ଠୋ କରି ଭାଙ୍ଗିଲା ବେଳକୁ ପାପଟି ଲିଭି ଯାଇଛି । ସେ ମୂର୍ଚ୍ଛା ହୋଇ ପଡ଼ିଗଲେ ।

ଗିରିଧରବାବୁ ଆସିଲା ବେଳକୁ ଏଇ ଦୁନିଆରେ ବାବାଙ୍କର ଆତ୍ମା ନଥିଲା ।

ସବୁ ଶେଷ ହୋଇଗଲା । ମାମୀର କପାଳ ସିନ୍ଦୂର ଅଦୃଶ୍ୟ ହୋଇଗଲା ।

ମାମୀଙ୍କୁ ସୁଶ୍ରୂଷା କଲେ ବୀଣା ଆଉ ମାଉସୀ । ଆଗକୁ କେହି ନାହିଁକି ପଛକୁ କେହି ନାହିଁ । ମୁଁ ବୁଢ଼ା ଆଉ ମୋ ପାଖକୁ ଛୋଟ ଭଉଣୀ ସୁମ । ସବୁ ଶେଷ ହୋଇ ଯାଇଛି ।

ମୁଁ ଜଣେ—ମନ୍ତେ ହିଁ ସବୁ କରିବାକୁ ହେବ—
ସମସ୍ତେ ମୋଟର ଚଢ଼ିଲେ ।
ଯିବା ପୂର୍ବରୁ ମଉସା ଓ ମାଉସୀଙ୍କୁ ପ୍ରଣାମ କଲି,
ଆଉ ବୀଣାକୁ କହିଲି, ଯାଉଚି—

•

ଅକ୍ଷ ନିୟତ ବୁଲୁଚି ।

ଯାହା କିଛି ମଳିନ, ଅସୁନ୍ଦର, ନିସ୍ତେଜ, ବୁଭୁକ୍ଷୁ, ମ୍ରିୟମାଣ, ତାହା ଧ୍ୱସ୍ତ ହୋଇ ଯାଉଚି । ପୁରୁଣା ସ୍ଥାନରେ ନୂଆ ଆସୁଚି, ନୂଆ ସ୍ଥାନକୁ ଅନାଗତ ଅନାଇ ରହିଚି । ନୂଆ ପୁଣି ଜରାଜୀର୍ଣ୍ଣ ହେଉଚି । ଆଶା ଅଟ୍ଟାଳିକା ଧୂଳିସାତ୍ ହେଉଚି । କଳ୍ପନା-ବିଳାସ ଚାଂଶୁଳ ହୋଇ ଯାଉଚି । ବିଶ୍ୱ-ଗତିର ବିଚିତ୍ର ଛନ୍ଦର !

ଗିରିଧରବାବୁ ବା ସେ ଛନ୍ଦରକୁ ଏଡ଼ନ୍ତେ କିପରି ? ବାବାଙ୍କ ପଛେ ପଛେ ସେ ଚାଲିଗଲେ । ବିଶ୍ୱରେ ଆମର ଏଇ ଜନ୍ମର ପିତୃସ୍ଥାନ ମହୋଦଧିରେ ମିଶିଗଲା । ତ୍ରିବେଣୀ ତୀର୍ଥରୁ ପବିତ୍ର ବାରି ରାଶିରେ ଆମର ପିତୃ-କାହାଣୀ ଶେଷ ହୋଇଗଲା ।

ଆମେ ଫେରିଲୁ ।

ବର୍ଷେ ଗଡ଼ି ଯାଇଛି । ମାଉସୀ ଲଳିତା ଦେବୀଙ୍କ ନିକଟକୁ ମାମୀ ଲେଖିଲେ, ଭଉଣୀ, ତମର ମୋର ସବୁ ସଖ ସରିଯାଇଛି । ତମର ପୁଅ ନାହିଁ ଆଉ ମୋର ବୋହୂ ନାହିଁ । ସବୁ କଥାତ ଚାଲି ଯାଇଥିଲା । କେବଳ ବିବାହଟା ଥିଲା ବାକି । ବୀଣା ସହିତ ପ୍ରେଡ଼୍‌ର ବିବାହଟା ଏଇ ମାଘ ଶୁକ୍ଳ ପଞ୍ଚମୀରେ ବଢ଼ାଇ ଦେଲେ ଭଲ ହେବ । କଣ କହୁଚ ଲେଖିବ, ଏଠା ସବୁ କୁଶଳ । ତମର ସର୍ବାଙ୍ଗୀନ କୁଶଳ ସକାଶେ ଈଶ୍ୱର ବିରାଜମାନ । ପତ୍ର ଦେବ —

ଜବାବ ଆସିଲା, ଅପା, ତମେତ ସବୁକଥା ଜାଣ । ବୀଣାର ବିବାହ ଅନ୍ୟ ଠାରେ ଠିକ୍ କରି ସାରିଲିଣି । ଯେଉଁଠି ଯିଏ ଶୃଙ୍ଖଳ ପକାଇବାକୁ ଥିବ, ସେଠିକି ସେ ଝୁଲିଯିବ । ଆମେ କ'ଣ କରି ପାରିବା ? ପିଲାଟା ଏବେ ପାଠ ପଢ଼ୁଛି—ଆସନ୍ତା ବର୍ଷ ବିବାହ ହେବ । କିନ୍ତୁ ଭାବିବ ନାହିଁ । ଆଶାକରେ ସମସ୍ତେ ଭଲରେ ଥିବ —

ମାମୀ ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ମୋ ହାତକୁ ପତ୍ର ଖଣ୍ଡିକ ବଢ଼ାଇ ଦେଲେ । ଘଣ୍ଟାଏ କାଳ ଧରି ପଢ଼ିବାର ବିଷୟ ବସ୍ତୁ କିଛି ନଥିଲା । ଲଳିତା ଦେବୀ ନିର୍ଦ୍ଦିଷ୍ଟ ଉତ୍ତର ଦେଇ ସାରିଚନ୍ତି । କହିଲି, ବୀଣାର ବିବାହ ଅନ୍ୟ ଠାରେ ଠିକ୍ ହୋଇ ସାରିଛି ।

•

ସୁମ ବସୁପୁରେ ପଚ୍ଚରିଲ, ବୀଣା ଅପା ଆଉ କାହାକୁ ବାହା ହେବ ? କଏ ଲେଖିଚ ?

ମାମୀ କହିଲେ, ତୋର ମାଉସୀ ଲେଖିଚ ।

ପାଖରେ ଥିବା ଲୋକେ ବିସ୍ମିତ ହେଲେ । ତଥାପି କ'ଣ କରି ପାରିବେ ? କଏ ହସିଲ, କଏ ବା ଦୁଃଖ କଲା ।

ଚୌକିରୁ ଉଠି କହିଲି, ଏ ଚିଠିଟା ନେଉଚି, ମାମୀ ।

ଆତୁରରେ ସେ କହିଲେ, କୁଆଡେ ଯାଉଚୁ ?

ଡରୁଚୁ ମା, କାଳେ କିଛି ଦୁର୍ଘଟଣା ଘଟିବ ବୋଲି ? ମୋର ପୁଅ ଜୀବନର କୁରୁକ୍ଷେତ୍ରରେ କେବେ ପଛ ଘୁଞ୍ଚା ଦେବ ନାହିଁ ।

ମାମୀଙ୍କ ହାତ ଶିଥିଳ ହୋଇଗଲା । ମୁଁ ଚାଲିଗଲି ମୋର ଏକାନ୍ତ ପ୍ରକୋଷ୍ଠକୁ । ଲେଖିଲି —

ନଜର,

ତୁ ମୋର ନଜର ହୋଇ ପାରିଚୁ । ଆଜି ଯିବା ଆଗରୁ ତୋତେ ନଜର ବୋଲି ଡାକି ଥରେ ମାତ୍ର ଆତ୍ମ ତୃପ୍ତି ଲଭୁଥାଏ । ଆମର ପତି-ପତ୍ନୀ ଜୀବନ ଏଇଠି ଶେଷ ହୋଇ-ଗଲା । ଭବିବାକୁ ପଡିବ ଆମେ ଆଉ ଏ ସଂସାରରେ ନାହୁଁ । ଶ୍ମଶାନର ମାଟିରେ ମିଶି ଯାଇଚୁ ।

ମୁଁ ଜାଣେ, ମାଉସୀ ଆମ ମୁହଁକୁ ଚାହିଁବେନି । ତୁ ଜାଣିଥିବୁ କି ନାହିଁ, ମାଉସୀ ତୋର ବିବାହ ଅନ୍ୟ ଏକ ଠାରେ

ଠିକ୍ କର ମାମୀ ପାଖକୁ ନିର୍ଦ୍ଦିଷ୍ଟ ଉତ୍ତର ଦେଇ ପାରିବେ । ଜଣା ପଡ଼ିଚି, ସେ ଆଉ କଦାପି ଆମ କଥା ରଖିବେନି । ତାଙ୍କର ଚିଠି ବି ଏଥିରେ ଦେଇଚି ତୋର ଜାଣିବା ସକାଶେ । ଦେଉ ।

ମୁଁ ଜାଣେ ତୁ ଆଜି ତୋ ଅନ୍ତର ମାନବ-ରୂପି ଉସ୍ତୁ ଉପରେ ଝୋପାଏ ଅଶ୍ରୁ ସିଞ୍ଚି ଋଦ-ବିଳାପ କରିବୁ । ମୁଁ କି ଆଉ ତୋର ଲୁହ ପୋଛି ସାନ୍ତ୍ୱନା ଦେବା ପାଇଁ ସେଇଠି ନଥିବି । ରୁଦ୍ର-ଅଗ୍ନିରେ ମୋର ଦେହ ପୋଡ଼ି ଯାଇଥିବ । ଆଉ —ଆଉ – ଏ ମୋର ଜୀବନ-ପାଙ୍କଣର ପ୍ରଜ୍ୱଳିତ ଅଗ୍ନିକୁଣ୍ଡରେ ଝାସ ଦେଖି ବସୁନ୍ଧରା ଥରି ଉଠିବ । ଗୃଲିଯିବି ଦୂର—ଅତି ଦୂରକୁ, ଏଇ ଜୀବନ୍ତ ବିଯୋଗ ଯନ୍ତ୍ରଣା କେଉଁ ଜନ୍ମକୃତ ମହା-ପାପଟି ।

ତୁ ବିବାହ କରି ଆନନ୍ଦରେ ରହ । ଏଇ ମୋର ଶେଷ କଲ୍ୟାଣ ।

ଇତି

ତୋର

ସର୍ବହରା ।

• ବାସ୍ତବିକ ସୃଷ୍ଟିର ବିଚିତ୍ର ଲୀଳା ବୁଝିବା ପାଇଁ କିଏ ସକ୍ଷମ !

ମାମୀ ପତି ବିଯୋଗରେ ତ ଅଶ୍ରୁ ଢାଳୁଥିଲେ । ଯା' ଉପରେ ଝିଅକ ପରି ଏ କଥା ହେଲା । ସେ ନିଜ ଆଖିରେ

ଦେଖିଚାନ୍ତି । ବାଣୀ ଆଉ ମୋର ସ୍ନେହ-ମମତା । ଉପଯୁକ୍ତ ବୋହୂ ପାଇଛି ବୋଲି ଆନନ୍ଦ ଲଭିଥିଲେ । କିନ୍ତୁ ହେଲା କଣ ?

'ଢଇବ ଦଉଡି ମଣିଷ ଗାଇ, ଯେଣିକି ଟାଣିଲେ ତେଣିକି ଯାଇ—

ଏଇ ସତ୍ୟ, ଏଇ ଅଭିଶାପ, ଅନାଦି କାଳରୁ ଚାଲି ଆସିଛି । ରକ୍ତ ମାଂସ ଶରୀର ଧରଣୀ ବକ୍ଷରେ ଅଭିଯାନ କରି ବୁଲୁଛି । କିନ୍ତୁ ସବୁ କ୍ଷେତ୍ରରେ ସେ ପରାସ୍ତ; ପରାଜୟ-ମାଳାକୁ ସେ ସର୍ବଦା ବରଣ କରିବାକୁ ପଡୁଛି ।

ଖାଇ ବସିଲା ବେଳେ ମାମୀ ମୋ ଆଡେ ଚାହିଁ ଅଶ୍ରୁ ବିସର୍ଜନ କରନ୍ତି । ମୁଁ ମୁଣ୍ଡ ପୋତି ବସେ । ମୋର ଲୁହ ଅନ୍ନ-ଲକ୍ଷ୍ମୀଙ୍କ ପାଦରେ ମିନତି ଜଣାଏ । ଆମ ଦୁହିଁଙ୍କ ବେଦନ ଦେଖି ହୁଏତ କାନ୍ଦି ଉଠେ । ଏଇତ ଦୁନିଆ, ଏଇତ ସଂସାର !

ମାମୀ କହିଲେ, ତୁମର ବାହାଘର ବେଗି କରିଦେ, ମୁଁ ଯିବା ଆଗରୁ ଦେଖିଥିବି ।

କହିଲି, ହଁ ମା, କରିଦେବି । ଆମ ଘରେ ତୁମର ଅନ୍ନ ଶେଷ ହୋଇ ଆସିଛି—କରିଦେବି ।

ତୁମ ସମ୍ଭାଳି ପାରେ ନାହିଁ । ଧକାଇ ଧକାଇ କାନ୍ଦେ । ଢଳାଇ ଶେଯରେ ଶୋଇପଡେ । ସ୍ନେହକୁ ବାନ୍ଧିନ ବାନ୍ଧିନ ପ୍ରାଣ ଚେଇଁବା ପାଇଁ ଏଇ ଦୁନିଆରେ ଆମର ଜନ୍ମ ।

।

ସୃଷ୍ଟିର ରହସ୍ୟ ବୁଝିବା ମୋହଗ୍ରସ୍ତ ମାନବ ପକ୍ଷେ ଅସମ୍ଭବ । ସୁଖର ତାତ୍ପର୍ଯ୍ୟ କିମ୍ବା ଦୁଃଖର ମୀମାଂସା ବୁଝିବା ସୀମିତ ବୁଦ୍ଧିର ବାହାରେ ।

ସର୍ଜନାର ମୂଳୋତ୍ପାଟନ କରିବା ପାଇଁ ପ୍ରଳୟ କୁଠାରକୁ ଟେକି ରଖିଛି । କାଳ ଠାକ ରହିଛି—ହସୁଛି । ଶିଶୁ ମୁହଁରେ ସ୍ତନ ଦେଇ ମା ଡାକୁଛି, ପିଲା ମୋର ପୂର୍ଣ୍ଣଚନ୍ଦ୍ର ପରି ଦିନକୁ ଦିନ ବଢ଼ିବ—ତାର ଏ ଆଶାକୁ ଝାମ୍ପି ନେବା ପାଇଁ ମୃତ୍ୟୁ ଧାଇଁ ଆସୁଛି । ହାୟ ମାତୃ ହୃଦୟ ! ହାୟ ସଂସାର !

ଚନ୍ଦ୍ରିକା-ବିତାନ ତଳେ ବିଳାସିନୀ ବିପଞ୍ଚି ବାଦନ କରୁଛି-ପ୍ରିୟ ଆସି ତାର ସ୍ନିଗ୍ଧ କପୋଳରେ ମଧୁ-ଚୁମ୍ବନ ଦେଇ

ମୁଗ୍ଧ ଦୃଷ୍ଟିରେ ଗ୍ରହୁଁଚ । ନୟୂଜ ଅନାଇ ରହିଚ ବିଯୋଗ-ଫାଶ ଧରି । ହାୟ ପ୍ରଣୟ ? ହାୟ ସଂସାର !

ବାଳୁତ ଅଭିମନ୍ୟୁ ଚକ୍ର-ବ୍ୟୂହରେ ପ୍ରବେଶ କରି ଅପୂର୍ବ ବୀରତ୍ୱ ଦେଖାଉଚ ! ଜନ-ନୟନଙ୍କୁ ତାର ଧୈର୍ଯ୍ୟ ସ୍ତବ୍ଧ କରୁଚ । ଶେଷରେ ରଣାଙ୍ଗନରେ ସେ ଭୂତଳଶାୟୀ ହେଉଚ । ହାୟ ବୀର ! ହାୟ ସଂସାର ! ଶୂଦ୍ରକ କାନ୍ତାର ବକ୍ଷରେ ଧ୍ୟାନ ମଗ୍ନ ହୋଇ ତପସ୍ୟା କରୁଚ । ଦଶରଥ ନନ୍ଦନ ରାମଚନ୍ଦ୍ରଙ୍କ ଅସିର ଶାଣିତ ଧାରରେ ତାର ମସ୍ତକ ଛିଡ଼ି ପଡ଼ୁଚି । ହାୟ ତପଶ୍ଚରଣ ! ହାୟ ସଂସାର !

ଶ୍ରୀକୃଷ୍ଣଙ୍କ ସନ୍ଧାନ ପାଇଁ ବାଳ ବେଲ୍ଲାବଳ ବଣ-ପର୍ଯ୍ୟଟନ କରୁଚ । ଶେଷରେ ଶର ଆସି ଆପଣା କ୍ଷୁଦ୍ରାଙ୍ଗୁଳିରେ ନଖ ତଳେ ଦେଉଚ ମୃଦୁ ଚନ୍ଦ୍ର । ହାୟ ଅହେତୁକ ! ହାୟ ସଂସାର !

ଘର ଭିତରେ ଶୋଣିତ-ପିପାସୀ ଲହ ଲହ ରସନା ଦ୍ରୌପଦୀ-ଚିକୁରକୁ ଗୁଡ଼ି ନେଉଚନ୍ତି । ହାୟ ବିଭତ୍ସ ! ହାୟ ସଂସାର !

ରାଜନ୍ୟ ମଣ୍ଡଳୀ ଭିତରେ ଧର୍ମରାଜ-ହୃଦୟ-ରାଣୀ ଉଲଗ୍ନ ମୁକୁଳିତ କେଶରେ ପ୍ରଳୟ ରୂପ ଧରି ଧ୍ୱଂସ ଅଭିଶାପ ଦେଉଚ । ହାୟ ରୌଦ୍ର ! ହାୟ ସଂସାର !

ସୃଷ୍ଟି ଗ୍ରଳିଚ । ଯେ ଯାହା କରିବା ପାଇଁ ବିବାଦ ହୋଇଚ, ସେ ତାହା କରି ଯାଉଚ । ମାନବ ମୁଁ କରୁଚ ବୋଲି ଫୁଲି ଯାଉଚ—କିନ୍ତୁ ଯେପରି ଆପଣ ବନା ତଳ ନାହିଁ । ହାୟ

ଗର୍ବ ! ହାସ୍ୟ ସଂସାର !

ବେଲ୍ଲାବଳ କମ୍ପୁଚ, ଶଙ୍ଖ ବାଜୁଚ-ଚଙ୍ଗ ଛେଦୁଚ ।

ପଥେ ପଥେ କେତେ ଗ୍ଲଲଗଲେ ଆଜ ମରଣ ଯାତ୍ରୀ ଦଳ—
ଗର୍ବର ଟୀକା ଲଗାଇ ଦେଉଚ ଷୁଧିତର ଭୁଷ'ନଳ;
ବଣ୍ଣ ବଜପୁ ଶଙ୍ଖ ଡାକୁଚ ଆଃସ ଆସ ନୂଆ ଯୁଗ—
ଧରଣୀ ଉପରେ ତୁମର ଜୀବନ ଯେତେ ଅଛି ତାହା ଭୋଗ ।

ଏଇତ ଦୁନିଆ ! ଦୁଃଖ ଭିତରେ ବସି ସୁଖକୁ ଖୋଜିବା ବାସ୍ତବଙ୍କ କେଡେ ହାସ୍ୟାସ୍ପଦ । ମଣିଷ ଭାବୁଚ, ଧରଣୀ ସୁଖମୟ, ଅମୃତମୟ, ସୁନ୍ଦରମୟ । କାହିଁ ତାର ସୌନ୍ଦର୍ଯ୍ୟ ? କେଉଁଠି ? କାହିଁ ତାର ସୁଖ-ସୌଧ ? ଦୁଃଖ ଯେତେବେଳେ ହଠାତରେ ହାଲିଆ ମାରେ, ସେଇ ସମୟକୁ ମଣିଷ କହେ ସୁଖ, ନୁହେଁ ? ଅବୋଧ ମାନବ !

ସୁମର ବିବାହ ହୋଇ ଯାଇଛି । ବାବାଙ୍କର ଶେଷ ମନୋବାଞ୍ଛା ପୂର୍ଣ୍ଣ ହୋଇଛି । ମୋର ଏକମାତ୍ର ଗୁରୁ ଦାୟିତ୍ୱରୁ ମୁଁ ଅବ୍ୟାହତି ପାଇଛି । ସଂସାରରେ ମୁଁ ଆଜି କିଛି ଲୋଡୁ-ନଥିଲି ।

ବିବାହ ତିନି ମାସ ପରେ ନବ ଦଂପତି ଆମ ଘରେ ରହିବା ପାଇଁ ଆସିଛନ୍ତି । ଭିଣୋଇକୁ ମୁଁ ଭାଇ ବୋଲି ଡାକେ, ଆଜି ସେ ମୋତେ ଡାକେ ନନା । ତାର ଅଗ୍ରଜ ସ୍ଥାନ ପୂରଣ କରେ ମୁଁ । ଏଇ ସ୍ନେହ ଭିତରେ ସୁମ ପତି ଠାରେ ସ୍ୱାଭାବିକ ଲଜ୍ଜା ଓ ସଙ୍କୋଚ ଅନୁଭବ କରି ମୋ ଠାରେ ଝଳ ଦଳ କରେ । ଅତଏବ ଦେଖି ମୁଁ ଡାକେ, ଭାଇ ଦେଖିଛ ସୁମ କମିତି ଦୁଷ୍ଟ ହେଲାଣି—

ରମେଶ ଅନ୍ୟ କକ୍ଷରୁ ଆସି କହେ, ତମ ଭାଇ ଭଉଣୀଙ୍କ କଳି କଜିଆରେ ମତେ କଣ ଅକାରଣରେ ପୁରେଉଛ ?

ସୁମ ମୋ ଜେଣାକୁ ପୁଳାଏ ଶମୁଁ ଟି ଦିଏ । ମୁଁ ରମେଶ କୁ ସେ ନାଲି ଦାଗଟା ଦେଖାଇ କହେ, ଦେଖିଲୁଟି, ସୁମ ମତେ କିମିତ ହରବର କରୁଛ ।

ସୁମ ଆଡେ ରମେଶ ଗୁହିଁ ସ୍ମିତ ହାସରେ କହେ, ନନାଟାଙ୍କୁ ଇମିତ ହରବର କରନ୍ତ ?

ସୁମ ମୋର ପଛ ପଟେ ମୁହଁ ଲୁଚାଇ କହେ, ଆମ ନନା ଭଉଣୀ କଥାରେ ଆପଣ ମଧ୍ୟସ୍ଥ ହେବାକୁ କିଏ କହିଲାକ ?

ଏଇ ସ୍ନେହ ଭିତରେ ଆଜ କାଲ ମୋ ଜୀବନ ଅତି-ବାହିତ ହେଉଛି ।

ସେ ଦନ ଠିକ୍ ଏଇ ସ୍ରୋତରେ ଆମ ହାସ୍ୟ କୌତୁକ ଚାଲି ଥିଲା ।

ସୁମ କହିଲା, ଆପଣତ ନନାଙ୍କର ଜୁଆଁଇ—ଆଉ—

ରମେଶ ସହସା ଉତ୍ତର ଦେଲା, ଓ, ତେବେ କହୁଛ, ଏଇଠି ମୁଁ ଭାଇ ପରି ନଚାଲି ବନ୍ଧୁ ହିସାବରେ ଚଳିବାକୁ ହେବ । ହେଉ, ଏତ ତମର ଆଦେଶ । ଶିରୋଧାର୍ଯ୍ୟ କରି-ବାକୁ ପଡ଼ିବ । ଏତିକି କହି ସେ ପାଖରେ ଥିବା ଲଫାପାଟି ଖୋଲିଲା ।

ହଠାତ୍ ସ୍ମୃତିର ଆବେଗ ମତେ ଗମ୍ଭୀର କରିଦେଲା ।

ରମେଶ ଲକ୍ଷ୍ୟ କରି ପାରି ନାହିଁ । ନିମନ୍ତ୍ରଣ ପତ୍ରରୁ ଆଖି ଫେରାଇ କହିଲା, **Who is this Beena—going to be married—**

ସୁମ ରମେଶ ହାତରୁ ପତ୍ରଟିକୁ ଛଡ଼ାଇ କହିଲେ, ତମ ପେଟରେ ଫାଳେ ସୋରିଷ ବି ରହିବ ନାହିଁ—

ମୋ ସହିତ ବୀଣାର ସମ୍ପର୍କ ରମେଶଙ୍କୁ ସୁମ ବୋଧ-ହୁଏ କହି ସାରିଛି ।

ମୋର ଅଶ୍ରୁ ସମ୍ବରଣ ହୋଇ ପାରିଲା ନାହିଁ । ହୃଦୟ ଭିତରେ ବୀଣାର ଅମୃତ-ସ୍ନାତ ସ୍ମୃତି ଧାରି ହୋଇଗଲା । ବସନ୍ତର ପୁଷ୍ପିତ ଜଗତ ଭୁଲିଯାଇଛି ; ଝଡ଼ା ମଉଳର ଚଲ୍ଲ ଉପରେ ବନ ଦେବତା ବିଳାପ କରି ଯାଉଛି ଶେଷ ରାଗିଣୀ ।

ରମେଶ ମତେ ସାନ୍ତ୍ୱନା ଦେବା ପାଇଁ କେତେ ଆଉ କେତେ କଥା କହିଲା । ତଥାପି ମନ ମାନିଲା ନାହିଁ । ଅହେତୁକ ଭାବରେ ମନକୁ ଶାନ୍ତ କରିବା ପାଇଁ ରେଡିଓ ଟ୍ୟୁନ୍ କଲି । ହଠାତ୍ ଆସିଲା କେଉଁ ଏକ ରମଣୀ କଣ୍ଠର ସେହେନା ମୂର୍ଚ୍ଛନା । ସେହେନା ରାଗ ! ଏତ ମୋର ଜୀବନର ପ୍ରିୟତମ ରାଗ ! କରୁଣ କଳ କଲ୍ଲୋଳରେ ଶାନ୍ତି ଦେବା ପାଇଁ ଏ ରାଗହିଁ ଶ୍ରେଷ୍ଠ । ସଂଗୀତର ଆଳାପ-ବିଳାପ ଭିତରେ ମନେ ହେଲା ଏ ଯେପରି ଅତି ପରିଚିତ କଣ୍ଠର ରାଗିଣୀ । ଝଙ୍କୃତ ସ୍ୱରର

## — ବନ୍ୟାର ଦୁଇଟି ଫୁଲ —

କଳ୍ପନାରେ ତନ୍ମୟ ହୋଇ ଚାହିଁ ରହିଥିଲି — ବୁଦ୍ଧଦେବ ଓ କିସା ଗୌତମୀଙ୍କ ଚିତ୍ରପଟ ପ୍ରତି । କି ଶାନ୍ତ, କି ଉଦାର, କି ମହତ୍ତ୍ୱ ପ୍ରତିବିମ୍ବ ! ପାଖରେ ବିଷାଦ ଅଭିଭୂତ ନବ ଯୁବତୀ-ବାହୁ-ମୃଣାଳରେ ତାର ମୃତ ଶିଶୁ ।

ମୁଁ ପଚାରିଲି, ନନା, କିଏ ଗାଉଛି ?

ଚେତନା ଫେରି ଆସିଲା । କହିଲା, ମୁଁ ତ ଜାଣେ ନାହିଁ । ଗୀତ ଶେଷରେ ତ ପ୍ରକାଶ ପାଇବ ।

ତରୁଣୀ ରାଗକୁ ରୂପାୟିତ କରି ସାହିତ୍ୟର ଉଚ୍ଚ ଭାବ ସଂଯୋଜନାର ମଧୁର ନିକ୍ୱଣ ସହ 'ରାମା ଇକା ନାନୁ ବ୍ରୋବା ରାଦା' ଗୀତ ଆରମ୍ଭ କରିଛି । କି କରୁଣ ସେ ଭାବ ! ହଜି ଯାଇଥିବା ପୂଜା-ପ୍ରତିମାକୁ ଆଜି ଖୋଜି ଭକ୍ତ କବି ତ୍ୟାଗରାଜ ବିଳାପ କରୁଚନ୍ତି — ରାମ ! କେବେ କି ମୋ ପ୍ରତି ତୁମର ଦୟା ହେବନି ? ପଲ୍ଲବୀ—ମୂର୍ଚ୍ଛନାର ଆରୋହଣ-ଅବରୋହଣ ଭିତରେ ଯେଉଁ ନାଦ ସେ ସଂଗୀତ ମାଧୁର୍ଯ୍ୟ ଅତୁଳନୀୟ ବୋଧ ହେଲା । ମନେ ହେଲା ଏ ତରୁଣୀ ଜଣେ ବିରହିଣୀ । ତାର ବିରହ-ସ୍ଫୂର୍ତ୍ତିକୁ ମୋର ବେଦନା-ଝଙ୍କାରରେ ପ୍ରୋକ୍ଷିତ କରିବା ପାଇଁ ଏ କରୁଣ ରାଗ ଗାଉଛି । ପ୍ରତ୍ୟେକ ସ୍ୱର ଯୋଜନାରେ ସେ ଯେଉଁ ଅନୁଭୂତି ଜନିତ କୃତିତ୍ୱ ଫୁଟାଉଛି ସେଥିରେ ତାହା ବିୟୋଗ-ବିଧୁରା କିନ୍ନରୀର ବିକଳ କ୍ରନ୍ଦନ ପରି ଅନ୍ତରକୁ ଆଲୋଡ଼ିତ କରୁଛି । ଗାନର ଛନ୍ଦେ ଛନ୍ଦେ କାରୁଣ୍ୟ ରସ ଲହରୀ ଯେପରି ଢେଉ

ମାରୁଥିଲା—ମନେ ହେଲା ତାହା ଯନ୍ତ୍ର ଯନ୍ତ୍ରିତ ନୁହେଁ,—ସହଜାତ ଓ ସ୍ୱାଭାବିକ ।

ଗାନ ପ୍ରଦର୍ଶନୀ ଶେଷ ହେଲା । Announcer କହିଲେ, ଏତେ ବେଳ ଯାଏଁ ଆପଣମାନେ ବୀଣା ବଳାସିନୀ ଦେବୀଙ୍କ କଣ୍ଠ ସଙ୍ଗୀତ ଶୁଣିଲେ ।

ସୁମ ଆଶ୍ଚର୍ଯ୍ୟ ହୋଇ ପଚାରିଲା, କଏ ବୀଣା ଅପା ଗାଉଥିଲେ ?

ମୁଁ ସୁମର ଉତ୍ତର ଦେଇ ପାରିଲି ନାହିଁ । ମୋର ବାକ୍ ରୁଦ୍ଧ ହୋଇ ଯାଇଥିଲା ।

ସୁମ ମୋ ହାତ ଧରି ନେଇଗଲା ତଳ ପୁରକୁ ।

ଶେଯ ଉପରେ ଢ଼ଳାଇ ଦେଲି ଅବଶ ଦେହକୁ । ମନରେ ଭାବନାର ସୀମା ନାହିଁ ।

ସେ ଦିନ ଖିଆ ଶେଷ କରି ବାପ ମାଙ୍କ ସଙ୍ଗେ ଯାଇ-ଥିଲୁ କଙ୍କଡା ମାରି । ଠିକ୍ ଅନେକ ସାହାଯ୍ୟରେ ଆମେ ଦୁଇ ପ୍ରାଣୀ ମେଳ ଭିତରୁ ଦୂରକୁ ଚାଲି ଯାଇଥିଲୁ । ବୀଣା ଚମକାଇ ପରି କହିଲା, ଆଃ, ଯିବା, କେତେ ଦୂର ଚାଲି ଆସିଲୁଣି— ମୁଁ କିଛି ନ କହି ବୀଣାର ତନମା ତନୁକୁ ଭୁଜ ବଲ୍ଲରୀ ଭିତରେ ଛନ୍ଦିତ କଲି । ସେ କହିଲା, ତମେ ବଡ଼ ଦୁଷ୍ଟ ହେଲଣି ।

ଦୁହେଁ ଫେରି ଆସି ମେଳରେ ମିଶିଗଲୁ । ସବୁ ବୀଣା ଭୁଲି ଯାଇଛି । ବୀଣା ମୋର ହୃଦୟକୁ ଦ୍ରୁତ୍ତାବର୍ତ୍ତନ କରିଛି ।

ସ୍ନେହର ପ୍ରବଞ୍ଚନା ଦେଇ ମୋର ଜୀବନକୁ ଧୂଳିସାତ୍ କରିଛ । ଆଜି ଏଇ ଦୁଃଖ ଭିତରେ ସେ ସଙ୍ଗୀତ ଆଳାପ କରି ଯାଉଛି— ସୁଦୂର ମାନ୍ଦ୍ରାଜକୁ । କେଉଁଥି ପାଇଁ ? କିଏ ତାର ଆଳାପ ଶୁଣିବ ? କିଛି ବୁଝି ପାରିଲି ନାହିଁ । ସାଗର ସୈକତରେ ବୀଣା ତାର ଚଉଦ ବରଷ ଯୌବନକୁ ମୋର ଅନ୍ତର ବେଦୀ ଉପରେ ନୈବେଦ୍ୟ କରି ବାଢ଼ିଥିଲା ତାହା ଆଜି ଅତୀତରେ ମିଶି ଯାଉଛି । ପିଣ୍ଡରେ ପ୍ରାଣ ଥିବା ଯାଏ ଆମ ଦୁହିଁଙ୍କର ସେହି ମିଳନ, ସେଇ ପ୍ରଣୟ ଭୁଲି ହେବ ନାହିଁ । ମୋର ମନେ ଅଛି, ଭଲ ମନେ ଅଛି—ଉପରେ କ୍ଷୀଣ ଜ୍ୟୋତି ତାରକା, ଆଗରେ ସନ୍ଧ୍ୟା ପାଳିତ ଅନନ୍ତ ସମୁଦ୍ର—ଏହାକୁ ସାକ୍ଷୀ କରି ଆମ ପ୍ରଣୟର ପ୍ରଥମ ଅଭିସାର ରଚିତ ହୋଇଥିଲା ।

ଭାବି ଭାବି ଦେହ ଅଚଳ ହୋଇଗଲା । ରାତି ପ୍ରାୟ ସାଢ଼େ ନ ହେବ, ମାମୀ ଆସି ଖାଇବା ପାଇଁ ଉଠାଇଲେ । କହିଲି, ଦେହଟା ଖରାପ ଲାଗୁଛି—ଖାଇ ପାରିବ ନି !

ରମେଶ କହିଲା, ନନା, ଆପ ଟିକିଏ ଠାଁ କରିଯିବ, ଓପାସରେ ଶୁଅନ୍ତୁ କି—

କହିଲି, ନା, ଦେହଟା ଖରାପ ଲାଗୁଛି—କପାଳରେ ହାତ ମାରି ଦେଖ ।

ରମେଶ ମୋର କପାଳରେ ହାତ ବୁଲାଇ କହିଲା, ହଁ, ଟିକିଏ ଜର ଅଛି ବୋଧହୁଏ—ସୁମ, ଥର୍ମୋମିଟରଟା ଆଣିଛ—

ଜର ଶଢେ ଦୁଇ ।

ମାମୀ ରମେଶକୁ ଲକ୍ଷ କରି କହିଲେ, ତମେ ଆଜି ସୁମ ଯାଇ ଖାଇ ଚକାଅ ।

ରମେଶ ଯାଇ ପାରିଲା ନାହିଁ । ସେଇ ରାତିଟି ଆମ କ୍ଷୁଦ୍ର ପରିବାର ଉପବାସରେ ଶୋଇଲେ ।

ପାଞ୍ଚ ଛ' ଦିନ ହେଲା ମୋର ଜ୍ୱର ବଢ଼ି ଚାଲିଛି । ମୁଣ୍ଡ ପାଖରେ ବସି ଦିନରାତି ସୁମ, ରମେଶ ଆଉ ମାମୀ ସେବା ସୁଶ୍ରୂଷାରେ ଲାଗିଥାନ୍ତି । ଅନ୍ତହୀନ ଅନ୍ତରୀକ୍ଷ ତଳେ ସନ୍ଧ୍ୟା ଯେମିତି ତା'ର କୃଷ୍ଣ ଆବରଣକୁ ମୋର ଜୀର୍ଣ୍ଣ ତନୁ ଉପରେ ଘୋଡାଇ ଆଣୁଥାଏ । ସୁମ ବରଫ ଛଟି ଦେଉଥାଏ । ରମେଶ ପାଖରେ ବସି ମୋର ବାହୁ ଉପରେ ହାତକୁ ପରଶି ଆଣୁଥାଏ ।

କେହି ଜଣେ ମୋ ହାତକୁ ଦୁଇଟି ପୋଷ୍ଟ ଚିଠି ବଢ଼ାଇ ଦେଲା । ଗୋଟିଏ ଖଣାର । ଉଦ୍ବେଗରେ ଖୋଲିଲି—

ହୃଦୟର ଦେବତା,

ମୋର ଏ ଦେବତା ସମ୍ବୋଧନରେ ତୁମେ ବିସ୍ମିତ, ଚକିତ, ସ୍ତବ୍ଧ ହେବ । ଆଉ ମନରେ ମୋ ପ୍ରତି ଘୃଣା ଜାତ

ହେବ । ହେଉ । ତଥାପି ମୁଁ ସେ ସମ୍ବୋଧନକୁ ଛାଡି ପାରିବି ନାହିଁ । ହୃଦୟ ତମ ଚରଣ ତଳେ ରଖି ସାରିଛି । ଯଦି ଆମର ପୁନରପି ମିଳନ ହେବ, ହୃଦୟର ବେଦନାକୁ ବଖାଣିବି । ନଚେତ୍ ସବୁ ଭସ୍ମରେ ମିଶି ଯାଇଛି ବୋଲି ନିଶ୍ଚୟ କରିବ ।

ବିବାହ ତିନୋଟି ଦିନ ରହିଲା । ତମେ ପୁରୁଷ ହୋଇ ଏତେ ଦୁର୍ବଳ, ଏତେ ଭୟଗ୍ରସ୍ତ ! ମୋର ଯାତ୍ରା ପଥକୁ ଯଦି ଉଗାଳିବ, ଫେରି ପାଇବ । ନହେଲେ ଏଇ ମୋର ଶେଷ ବିଦାୟ । ମୁଁ ଜାଣେ ତମେ ମତେ ଭୁଲି ପାରିବ ନାହିଁ । ତଥାପି ଭୁଲି ଯିବା ପାଇଁ ଚେଷ୍ଟା କରିବ । ବୁଝି ପାରିଲ ? ବିବାହ ତିନୋଟି ଦିନ ରହିଲା ।

ଇତି
ତମର
ଚରଣ ସେବିକା ।

ବୁଝି ପାରିଲି । କିନ୍ତୁ—

ସୁମ ମୋ ମୁଣ୍ଡ ତଳେ ବସି ବୀଣାର ହସ୍ତଲିପି ଦେଖି ପାରୁଥିଲା । ପଚାରିଲା, କଣ, ବୀଣା ଅପା ଦେଇଛନ୍ତି ?

କହିଲି, ହଁ ସୁମ, ତୋର ବୀଣା ଅପା ଦେଇଛି । ରମେଶକୁ କହିଲି, ଭାଇ, ଲେଟର୍ ପେଡ୍ଟା ଆଣ ତ—

କାଗଜ କଲମ ଆସିଲା । ପାଖରେ ଭଉଣୀ । ତଥାପି ବୀଣା ପାଖକୁ ତା ଆଗରେ ରମେଶ ହାତରେ ଚିଠି ଲେଖାଇବା

ପାଇଁ ଶଙ୍କା ମନେ କଲାନ, ସେତ ଆଉ ମୋର ପର ନୁହେ ।
ଡାକି ଗଲି—

ମିଳନ,

ତୋ ଚିଠି ପାଇଛି । କଣ ଲେଖିବି ଭାବି ପାରୁ ନାହିଁ ।
ଶଦେ ଗୁଡ଼ିଏ ଉଠି, ଜରରେ ପଡ଼ିଛି । ପାଖରେ ସୁମ ଆଉ ତାର
ଛୋଟ ରମେଶ । ସୁମ ମୋ ମୁଣ୍ଡରେ ବରଫ ପଟି ଦେଉଛି ।
ଚିଠି ଲେଖିବା ପାଇଁ ବଳ ନାହିଁ । ହୃଦୟରୁ ଯେଉଁ ଦୁଃଖ ଟିକକ
ବାହାରୁଛି, ମୁଁ କହୁଗଲେ ଭାଇ ରମେଶ ଲେଖୁଛି । ଏଥିରେ
ଲଜ୍ଜା କରିବାର କିଛି ନାହିଁ । ରମେଶର ହସ୍ତଲିପି ଦେଖି ଅନ୍ୟଥା
ଭାବିବୁ ନାହିଁ । ଏ କେବଳ ମୋର ପତ୍ର । ମେଘଦୂତର ଯକ୍ଷ
କାହାଣୀ ପଢ଼ି, କୁମାରସମ୍ଭବର ରତି ବିଳାପ ପଢ଼ି, ଅନ୍ଧ
କବି ମିଲ୍‌ଟନ୍‌ଙ୍କ Paradise Lost ପଢ଼ି ମୁଁ ଶାନ୍ତି ପାଇ
ପାରିନାହିଁ । ବିଶ୍ୱ ବନ୍ଦନୀୟ କବି-ସ୍ରଷ୍ଟାଙ୍କ ଅମୃତ-ବାଣୀରେ
ମୋର ହୃଦୟ ସାନ୍ତ୍ୱନା ପାଇ ପାରିନାହିଁ । ମତେ ତୁ କବି-
ସ୍ରଷ୍ଟା କରିଚୁ । ସେଥି ପାଇଁ ମୋର ଅନ୍ତରର ଅଭିନନ୍ଦନ ନେବୁ ।
ରଘୁବଂଶରେ ବିଶ୍ୱ ଜୀବନକୁ ମହାକବି କାଳିଦାସ କବି ରୂପେ
ବନ୍ଦନା କରିଚନ୍ତି । ମତେ ତୁ ବନ୍ଦନା କରିଚୁ । ସୃଷ୍ଟିର ସ୍ରଷ୍ଟା
କବି, କବିର ସ୍ରଷ୍ଟା କବି—ଯେପରି ଛାୟା ଓ ଛାୟା । ଆଜି କବି
ନଥିଲେ ସ୍ରଷ୍ଟାଙ୍କୁ ଜାଣି ହୁଅନ୍ତା ନାହିଁ । ତୁ ମୋର ସ୍ରଷ୍ଟା ଆଉ
ମୁଁ ତୋର କବି । ତୁ ମୋର ଇନ୍ଦୁମତି, ଆଉ ମୁଁ ତୋର ଅଜ ;
ତୁ ମୋର ବଇଦିଶ, ଆଉ ମୁଁ ତୋର ଦାନ୍ତେ ।

ଆଜ ମରଣର ଶବଳିତ ସୋପାନରେ ମୋର ଜୀବନ ଖସି ଆସୁଚି । ଚତୁର୍ଦ୍ଦିଗରେ ଘୋର ଘନ ଘଟା ମୃତ୍ୟୁ ଢ଼କା ବଜାଇ ଅର୍ଦ୍ଧମର ଆହ୍ୱାନ ଦେଉଚି । ଏଇ ମର-ଲୀଳାରେ ତତେ ସାଥି କରି ପାଇ ପାରିବି ନାହିଁ । ମୁଁ ଏକାକୀ ଚାଲିଯିବି—ହିଁ—ଚାଲିଯିବି । କାଳିକି ତୋର ସବାଧ ଏଇ ଧରଣୀରେ ଅନୁଷ୍ଠିତ ହେବ । ହେଉ । ସୁଖରେ ହେଉ । ତା' ଆଗରୁ ମୋର ଶାନ୍ତି ତନୁ ନିଶ୍ଚିହ୍ନ ହେଉ । ପ୍ରଣୟର ଏ ତୀବ୍ର ଜ୍ୱାଳା, ସଂସାରର ଏ ବଜ୍ରାଘାତ ସହ୍ୟ ହେବନି । ମୋ ଜୀବନର କାହାଣୀ ଶେଷ ହୋଇ ଆସିଲା । ତୁ ବେଦୀ ଉପରେ ବସି ସିନ୍ଦୂର ଝଢ଼ ପାଉଥିବୁ, ଅଶୁଭ ବାର୍ତ୍ତା ଯିବ । ତତେ କେହି କହିବେନି । ତାହାହିଁ ମତେ ଲୋଡ଼ା । ତୋର କଲ୍ୟାଣ ସମୟରେ ଅଶାନ୍ତି ଦେବା ପାଇଁ ମୁଁ ଚାହେଁନି । ଏ କଳୁଷିତ ଧରଣୀ ବକ୍ଷରୁ ମୁଁ ପ୍ରଥମେ ଚାଲି ଯାଉଚି ।

Let my heart burst in time
Let my heart live in peace
Let my life flicker and die
God, from this frail world, me release.

Let this ragged tragedy van
And my heart for ever mute doth run
You life ! repose me beneath thy feet !
And Let me wait for Beena's soul's Return !

କହୁ କହୁ କଣ ଗୁଡାଏ କହିଗଲି, ଲେଖି ଲେଖି କଣ ଗୁଡାଏ ଲେଖିଗଲି, ସେଥିର ଭାବ କଣ, ବୁଝିବାକୁ ତର ନାହିଁ ! ସବୁ ଯେପରି ପବନରେ ଭାସି ଆସି ପବନରେ ମିଳେଇ ଯାଉଛି । ଯାଉ — ଶେଷରେ ମୋର ଏଇ କଲ୍ୟାଣ, ତୁ ଶାନ୍ତିରେ ରହ ।

ଖୁଦାପୁ
ଇତି
ତୋର
ସର୍ବଦର୍ଭ ।

ଚିଠି ଶେଷ ହୋଇଗଲା । ରମେଶକୁ କହିଲି, ପୋଷ୍ଟ କରିଦେବୁ । ରମେଶ ଚିଠିଟିକୁ ଲଫାପା ଭିତରେ ଭର୍ତ୍ତିକଲା । ମୋ ଗ୍ରନ୍ଥି ଭିତରୁ ପ୍ରାଣବାୟୁ ଉତ୍କ୍ଷିପ୍ତ ହୋଇ ଉଠିଲା । କହିଲି, ଭାଇ, ଦେବନାଥ କମିତି ଉପରକୁ ଉଠୁଛି । ମତେ ଟିକିଏ ଧରୁଛି—

ରମେଶ ମତେ ଧଇଲା । ପ୍ରକୋଷ୍ଠରେ ଜଳୁଥିବା ନଷ୍ଟଳ ଘାପଟି ଧପ୍ କରି ଲିଭିଗଲା । ଉଦ୍ବେଗରେ କହିଲି, ଭାଇ, ମୁଁ ଆଉ ବଞ୍ଚିବି ?

କ'ଣ ଇମିତି ଭାବୁଚ, ନନା ?

ସୁମ କହିଲା, କଣ ଇମିତି କହୁଚ, ନନା ?

ମାମୀ ଧାଇଁ ଆସି କହିଲେ, ଇମିତି ପଡ଼ିରନ୍ତ !

ମାମୀକୁ ଟିକିଏ ଚାହିଁ ରହିଲି । ଜନ୍ମଦାତ୍ରୀ । ପତି

ବିୟୋଗ ଦୁଃଖ ସହି ଦେହରେ ହାଡ ପଞ୍ଜର ରହିଛି । ଆଜି ପୁଅ ବିୟୋଗ ଦୁଃଖ ସହିବାକୁ ଯାଉଛି । ଜାଣି ପାରୁ ନାହିଁ !

ତାହାଁ ମୋର ଆଖି ଧୀରେ ଧୀରେ ଅପସରିଗଲା ମୃତ୍ୟୁ ଆଡେ । ମୋର ଅବସ୍ଥା ଦେଖି ତାର କଅଁଳ ଚିତ୍ତ ସମ୍ଭାଳି ପାରିଲା ନାହିଁ । ରୁଦ୍ଧ କଣ୍ଠରେ କହିଲା, କ'ଣ ନନା ସିମିତି—ଆଉ କହି ପାରିଲା ନାହିଁ ।

ଏମାନଙ୍କର ଡାକ ଶୁଣିବା ପାଇଁ ମୋର ଆଉ ବେଳ ନାହିଁ ?

ସମସ୍ତେ ଏକ କଣ୍ଠରେ ଡାକିଲେ, ଫ୍ରେଣ୍ଡ୍, ନନା, ନନା · ଥରକେ ଲାଗିଲା । ଆଖି ଫିଟାଇ କହିଲି, କ'ଣ ?

ରମେଶ କହିଲା, କଥା କହୁନା' ?

ମୋତେ ବାବା ହାତ ବଢ଼ାଇ ଡାକୁଚନ୍ତି, ତମକୁ ଦିଶୁ ନାହିଁ ? ସେ ମୋତେ କ'ଣ କହୁଥିଲେ— ତମେ ଚୁଷ୍ଟରେ ଡାକ ଦେଲ— ମୋତେ ଟିକିଏ ଶାନ୍ତି ଦିଅ— ବାବା କ'ଣ କହୁଚନ୍ତି ଶୁଣେ—

ସମସ୍ତେ ତୁଣ୍ଡ କରି କହିଲେ, କ'ଣ ଇମିତି କଥା କହୁଚ—

କ୍ଷୀଣ କଣ୍ଠରେ କହିଲି, ମୁଁ କରିବି କ'ଣ ? ପ୍ରଦୀପ ତ ଯାଉଛି ଲିଭି—

ସବୁ ଶେଷ ହୋଇ ଗଲା । ଫ୍ରେଡ଼୍ ଶୁଣିଗଲା । ହଦନ ଭିତରେ ଗ୍ରେଟ୍ ଫସାରଟି ଅନ୍ତ୍ୟେଷ୍ଟି କ୍ରିୟା କରିବାର ଆୟୋଜନ କଲେ ।

ଚିତା ଉପରେ ଫ୍ରେଡ଼୍‌ର ମୃତ ଦେହକୁ ଥୋଇଚନ୍ତି, କେହି ଜଣେ ଗୋଟିଏ ଟେଲିଗ୍ରାମ୍ ରମେଶଙ୍କୁ ଶୁଣାଇ ପଢ଼ିଲି,
**Beena expired — Sudden Heart failure—**

ରମେଶ ବିଚଳିତ ହେଲି ନାହିଁ, କି କଥା କହି ନାହିଁ । ଅଜାଣତରେ ତା ତୁଣ୍ଡରୁ ବାହାରି ପଡ଼ିଲି, 'ମିଳନ' !

× × × ×

—ଜ୍ଞାପକ—

ଆଜ ଏ କାହାଣୀକୁ ଫ୍ରେଡ୍ ସ୍ଥାନରେ ରମେଶ ମୁଁ ବୋଲି କହି ଅଗ୍ରଜର ସ୍ମୃତିକୁ ବଞ୍ଚାଇ ରଖୁଚି !

ଦୁନିଆର ଆରପାରରେ ବନ୍ୟାର ଦୁଇଟି ଫୁଲ ପରସ୍ପରକୁ ଫେରି ପାଇବେ ଅବା ବନ୍ୟାର ଆଘାତରେ ଦଳି ହୋଇ ଯିବେ—ସେ କଥା କିଏ କହିବ ।

ରଜ ସଂକ୍ରାନ୍ତି
୧୯୪୭